ଅଚ୍ୟୁତାନନ୍ଦ, ଯଶୋବନ୍ତ, ବଳରାମ,
ଅନନ୍ତ ଓ ଜଗନ୍ନାଥ ଦାସ ପ୍ରଭୃତି

# ପଞ୍ଚସଖାଙ୍କ ଭଜନ

ସମ୍ପାଦକ—ପଣ୍ଡିତ ଶ୍ରୀ ଶ୍ୟାମସୁନ୍ଦର ନାୟକ

ଶ୍ରୀ ଅରକ୍ଷିତ ଦାସଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ



୧୯୬୨

ପ୍ରାପ୍ତିସ୍ଥାନ
**ଦଶରଥି ପୁସ୍ତକାଳୟ**
**ଶନୁବଜାର, ୦୫୦**
**ପୋ: ଭନ୍ଦନୀତୌଲ**

ମୂଲ୍ୟ ୪ ୦ ୫ ପଚ୍ଚିଶ ନୂଆପଇସା

# ପଞ୍ଚସଖାଙ୍କ ଭଜନ



## ନମଃ ପରମ ପୁରୁଷ ନିରଞ୍ଜନାୟ

ନମସ୍ତେ ପରମବ୍ରହ୍ମଂ ନମସ୍ତେ ପରମାତ୍ମନେ
ନିର୍ଗୁଣାୟ ନମସ୍ତୁଭ୍ୟଂ ସଦ୍ରୂପାୟ ନମୋନମୋଃ ।
ନମସ୍ତେ ଅଚ୍ୟୁତାନନ୍ଦଂ, ନମସ୍ତେ ଜଗନ୍ନାଥାୟ
ନମୋ ଯଶୋବନ୍ତାନନ୍ତଂ, ବଳରାମଂ ନମୋନମଃ ।
ଅଖଣ୍ଡମଣ୍ଡଳାକାରଂ, ବ୍ୟାପ୍ତଂଯେନ ଚରାଚରଂ
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।

### ଗୀତ

ନମସ୍ତେ ପରମବ୍ରହ୍ମ ପରମ ପୁରୁଷ ।
ନମସ୍ତେ ପରମ ଆତ୍ମା ଅଖିଳବିଳାସ ହେ । ୧ ।
ନିର୍ଗୁଣ ପୁରୁଷ ନିରାକାର ନିରାମୟ ।
ଅରୂପାନନ୍ଦ ହେ ପ୍ରଭୋ ! ଅକ୍ଷୟ ଅବ୍ୟୟ ହେ । ୨ ।
ଅଟେ କଳ୍ପବୃକ୍ଷ ହୋଇ ସଂସାର ମଧ୍ୟରେ ।
ପଞ୍ଚସଖାମାନେ ପଞ୍ଚଶାଖା ପରକାରେ ହେ । ୩ ।
ଅଚ୍ୟୁତାନନ୍ଦ, ଯେ ଜଗନ୍ନାଥ, ଯଶୋବନ୍ତ ।
ବଳରାମ ଦାସ ପୁଣି ଯେ ଶିଶୁ ଅନନ୍ତ ହେ । ୪ ।
ଏମନ୍ତ ଭାବରେ ପଞ୍ଚସଖାମାନେ ସ୍ଥିତ ।
ଶ୍ରୀପଦେ ଶରଣ ମୁହିଁ ଭକ୍ତ ଅବିରତ ହେ । ୫ ।

ମୁଁ ଅଟେ ଅଧମଜନ ପତିତ ପାମର
ନ ଜାଣଇ ଜ୍ଞାନ ଧ୍ୟାନ ସେବା ସୁଅଗ୍ରର ହେ । ୨ ।
ପଞ୍ଚସଖାଙ୍କର ପାଦେ ଚିତ୍ତବୃତ୍ତି ଦେଇ ।
ଅଧମ ଶ୍ୟାମସୁନ୍ଦର ଅନ୍ୟ ନ ଜାଣଇ ହେ । ୭ ।

———

## ୧-ମହାପୁରୁଷ ଅଚ୍ୟୁତାନନ୍ଦ ଦାସଙ୍କ ଭଜନ

ବାଇମନ ହୋ ବସି ଅବନା ବନ
ଅବନା ବନିଲେ, ଅମିଶା ମିଶିବ
ଅମାପରେ ମପା ହେବ ଚୋ ଧନ । ପଦ ।
ଅମାସ୍ୟା ନିଶିରେ ଷୋଳକଳା ଚନ୍ଦ୍ର
ସର୍ବଦା ନଶିରେ ରବି ଦର୍ଶନ ।
ଅହର୍ନିଶ ଯହିଁ ପ୍ରଦୀପ ଜଳୁଛି
ଦୀପ ତେଜେ ଅନେଗ୍ରୁଣ ପବନ । ୧ ।
ନିର୍ଝର କନ୍ଦରେ ହଂସ ପହଁରୁଛି
ଅଗାଧଜଳେ ହରଣୀ ଅସନ ।
ଶଚେ ଛୁଆ ଧେନ ଖେଳୁଛି ହରଣୀ
ବ୍ୟାଘ୍ର ଅଣି ତାକୁ ଦଏ ଭୋଜନ । ୨ ।
ନିଶବଦ ଘରେ ନାମ ସଙ୍କୀର୍ତ୍ତନ
ଶବଦରେ ନାହିଁ ହର ଭଜନ ।
ଗୃହ ମେଘେ ମିଳ ଜଳ ବରଷନ୍ତି
ମରୁଛିରେ କୃଷି ହେଲା ଦହନ । ୩ ।
ଶୂନ୍ୟରେ ଶୂନ୍ୟରେ, ଦେଉଳ ହୋଇଛି
ଦେଉଳ ଗୋଟିକ ଅପେ ନିର୍ମାଣ ।
ଭଲ ସେ ବ୍ରହ୍ମାଣୀ ଗଢ଼ିଅଛି ପୁଣି
ଅମ୍ଭହିଁ ଦେଉଳେ ଦଅଁ ଦର୍ଶନ । ୪ ।

ନିର୍ଦ୍ଧନର ଘରୁ ବନ୍ଧା ନେଇ ଧନ
ଚୋର ବସି ଦଣ୍ଡେ ଭଲେ ବେଦନ ।
ଧର ହେଲେ ଚୋର ଧରନ୍ତି ପସୂର
କହଇ ଅଚ୍ୟୁତ ମୂଢ଼ ଅଜ୍ଞାନ । ୪ ।

———

## ୨—ଆହେ ଚକାଡୋଳା—ବୃତ୍ତେ

ଅରେ ମନ ମୋର,
ମୁଁ ଯେ କହୁଛି ସ୍ୱରୂପ ତୋ ଅଗର । ପଦ ।
ଧୂନି ଗୁରୁପାଖେ ଜ୍ୟୋତିଘର,
ଧବଳ ଚିତାକୁ ଲକ୍ଷ୍ୟ କର,
ଧାଉଁଅଛୁ ଜୀବ ପରମ ପଦକୁ
ଧାପ କହଣ ସେ ନିରନ୍ତର । ୧ ।
ଦେଉଳ ଦୁଆରେ ଦଅଁ ଘର,
ମୂଜିବାକୁ ଅତି ତତପର,
ଦେଉଳେ ପଶିଣ, ଲକ୍ଷ୍ୟରେ ମଜ୍ଜିଲେ,
ଦୃଷ୍ଟିରେ ଦେଖିବୁ ନିରାକାର । ୨ ।
ତ୍ରିକୁଟ ତ୍ରିବେଣୀ ତିନି ଧାର
ବହନ୍ତା ନଦୀକି ଲକ୍ଷ୍ୟକର
ବଙ୍କନାଳ ପାଣି ଚେଙ୍କନ୍ତି ଭଜାଣି
ଉଡ଼ିଯିବ ହଂସାଘର ତୋର । ୩ ।
ଧାଉଁ ଗୁରୁପଦେ ଆଶ୍ରେ କର
ଫିଟିଯିବ ଭବଭୟ ତୋର,
ଭଜି ନ ପାରିଲେ ପାମର ଅଚ୍ୟୁତ
ଭଗାବ କରୁଛି ହାରଖାର । ୪ ।

———

## ୩—ଅନାଥ ଭଜନ

( ତାଳ—ତ୍ରିପଟା, ଚଉଦ ଅକ୍ଷର )

ଚନ୍ଦ୍ରାବଳୀ ପଚାରନ୍ତି ରାଧାଙ୍କ ଛାମୁର ।
ଅନାମ ଭଜନ ମୋତେ କରାଅ ଗୋଚର ଗୋ । ୧ ।
ଠାକୁରାଣୀ ହସି ବୋଲନ୍ତି ବଚନ ।
ଯାହା ପଚାରିଲୁ ସହି ଅତ୍ୟନ୍ତ ଗହନ ଗୋ ।
ପୂର୍ବ ଜନ୍ମେ ପୁଣ୍ୟ ଥିଲେ ଏହା ସିନା ଜାଣି ।
ପୂର୍ବେ ତୁମ୍ଭେ ଅଟ ମୋର ବିଶ୍ୱାସୀ ସଙ୍ଗିଣୀ ଗୋ । ୩ ।
ତେଣୁ କର କହୁଅଛୁ ଶୁଣ ଗୋ ସଙ୍ଗାତ ।
ଅକାର ଉକାର ଦୁଇ କରିବ ଏକତ ଗୋ । ୪ ।
ଏକାର ତାହାର ବାମେ ଲିହିବ ଈଶ୍ୱରତ ।
ଈକାର ଅକାର ଦୁଇ କରିବ ଯେ ଯୁକ୍ତ ଗୋ । ୫ ।
ତୃତୀୟ ବେଳକୁ ଏହୁ ଉଠିବ ଯେ ଭଲେ ।
ଏମନ୍ତ ଭଜନ ପାଇ ପୂର୍ବ ଭାଗ୍ୟ ଥିଲେ ଗୋ । ୬ ।
ସଖି ପଛେ ଧ୍ୟାନରେଣ ଅଚ୍ୟୁତ ଯେ ଥିଲା ।
ଅନାମ ଭଜନ ଶୁଣି ସୁଗତି ଲଭିଲ ହେ । ୭ ।

— - —

## ୪—ନିରଞ୍ଜନ ଭେଟ

ମନ ଭୁଲ ନା ହେ, ରହି ତ୍ରିକୂଟ ସନ୍ଧିକି
ତ୍ରିକୁଟ ସନ୍ଧିରେ ନିର୍ବିକାର ବଜେ
ଲକ୍ଷ୍ୟ ଲଗାଅ ତହିଁକି । ପଦ ।
ତ୍ରିପୁର ଯହିଁରେ ହଂସ ହୋଇଛନ୍ତି,
ଦୁଷ୍ଟ ଦଳନ ପାଇଁକି ।
ଶୈଳ ରୂପା ପ୍ରାସେ କବାଟ ଲାଗିଛି,
ଶବଦ ବଜ୍ର କଳଣୀ ଗୋ । ୧ ।

ସେ ସ୍ଥାନରେ ଯେତେ ପରତେ ହୋଇବୁ,
ମାର ପଚଶ ପ୍ରକୃତଙ୍କ ।
ପାଞ୍ଚ ମନକୁ ତୁ ଏକତ୍ର କରଣେ,
ନାଶିବୁ ଷଡ଼ ଅରୀଙ୍କ । ୨ ।
ଇନ୍ଦ୍ରିୟ ଏଗାର ନିବେଧିବୁ ଯେବେ
ଅନ୍ଧ କାହାକୁ ତୋ ଭ୍ରାନ୍ତିକ,
ତାଲେହେଁ ପିଛଡ଼ା ନ ପାଉଣେ ଲବେ,
ଜଜାଣି ଠେକ ବାଇକ । ୩ ।
ଶ୍ରୀଗୁରୁ ବଚନ କର୍ଣ୍ଣକର ଧେନ,
ସଧିରେ ବଳାଅ ମତଙ୍କ ।
ବଜ୍ରହିଁ କବାଟ କେବେ ନୁହେଁ ଅଣ୍ଟ
ଖଣକେ ଯିବ ଫିଟିକ । ୪ ।
ଫିଟାଇ କବାଟ ନିରଞ୍ଜନ ଭେଟ
ଦେଖିଲେ ପାଇବୁ ଗତଙ୍କ ।
କହେ ଦୀନ ହୀନ, ପାମର ଅଚ୍ୟୁତ,
ପାଦ-ପଦ୍ମେ ଦେଇ ମତଙ୍କ । ୫ ।

---

## ୫-ତାଳ ତ୍ରିପଟା, ଚଉଦଅକ୍ଷରୀ

ଜ୍ୟୋତି ପରେ ଦିବ୍ୟ ଜ୍ୟୋତି ଅମଣ୍ଡଳା ସ୍ଥାନ ।
ନିର୍ବାତ ମନ୍ଦିରରେ ବିଜୟ ଭଗବାନ ହେ । ୧ ।
ନିତ୍ୟ ନବଗୁଣ ସେ ପରମ ପାଶେ ଯାଇ ।
ଶୁକ୍ଳ ବର୍ଣ୍ଣ ସ୍ୱରୂପେ ଜ୍ୟୋତି ବିରାଜଇ ହେ । ୨ ।
ଏକଇ ଚରଣେ ଜଗ ଅନ୍ତରୀକ୍ଷ ରୂପୀ ।
ଚରଣୁ ଅମୃତ କ୍ଷର ବ୍ରହ୍ମାଣ୍ଡରେ ବ୍ୟାପୀ ହେ । ୩ ।

ସତ୍ତ୍ୱ ରଜ, ତମ ତିନି ପାଦରୁ ଜନ୍ମିତ ।
ସେ ପାଦେ ସେବଇ ଦୀନ ପାମର ଅଚ୍ୟୁତ ହେ । ୪ ।

---

## ୬—ମନସୂତ୍ର ଭଜନ

(ହଂସ ଉଡୁଛି ହୋ, କଲପ ବଟରେ—ବୃତ୍ତେ)

ମାଳା ଉଜୁଛୁରେ ଭଜନ ବହିବ ନାହିଁ ।
ଲୋକେ ଜାଣିବାକୁ, ଭକ୍ତଆ ହୋଇ
ଠକଠକ କରୁ ତୁହି । ପଦ ।

ତୁ କିସ ଭଜିବୁ, ଭଜନ ଲାଗିଛି,
ନିକୁଞ୍ଜ ସନ୍ଧିରେ ଯାଇ ।
ତ୍ରିଭଙ୍ଗିମା ରୂପ, ଲୟ ତୁହି କଲେ,
ରାଧାକୃଷ୍ଣ ଭେଟ ପାଇ । ୧ ।

ମନ୍ତ୍ର ଯନ୍ତ୍ର ନାହିଁ ମାଳା ନ ଗଡ଼ଇ,
ମନ ସୂତ୍ରରେ ଭଜନ ।
ଅସୁଛି ଯାଉଛି ବ୍ରାହ୍ମଣ ନୋହୁଛି,
ଭଜି ତୁ ପାରିଲେ ଶାନ୍ତ । ୨ ।

ସେ ଯେଉଁ ଭଜନ, ମାଧାଗର୍ବ୍ଭ ଜାଣ
ଆଜ କାଲି ଭଜୁ ନାହିଁ ।
କାୟାରୁ ମାୟା ସେ, ବାହାର ହୋଇଲେ
ବହୁ ପ୍ରାୟେ ଘୋଟି ଥାଇ । ୩ ।

ତାହାଙ୍କ ଅନେକ ଗୀତ ଭାଗବତ
ଚେତା କରିଇବା ପାଇଁ ।
ନ ଚେତ ଅଜ୍ଞାନ, ନ ଭଜିଲେ ନାମ,
ମାୟା ମୋହେ ନାଶ ଯାଇ । ୪ ।

ସେ ଯେଉଁ ଭଜନ ସାଧୁଜନ ମନ
ପୂର୍ବ ବାସନାରୁ ପାଇ ।
ଭଣିଲେ ଅଚ୍ୟୁତ ନ ଭଜିଲେ ନାମ
ଅକାରଣେ ଧନ ଯାଇ । ୪ ।

—:୦:—

## ୭—ମନସନ୍ତ୍ର ଭଜନ

ସୁଜନେ ହୋ, ବାଲିରେଣୁ ମହାବନ୍ଧ
ଦୋମୁହାଁ ସର୍ପକୁ ଭୟ ନ କରଣ ବେଙ୍ଗ ଚଢ଼େ ଗଜକନ୍ଧ
ଅଣ୍ଡିରି ହଂସ ଯେ ଡିମ୍ବେକ ପାଡ଼ୁଛି, ତା ମଧ୍ୟେ ଯୋଡ଼ିଏ ବନ୍ଧ ।
ଅନ୍ତରରେ ଜଳ, ଅନ୍ତରେ ଅନଳ, ଦେଖି ହେଲି ଆଚମ୍ବିତ,
ଚିନ୍ତ୍ରୀ ବାପୁଡ଼ାକୁ ଚନ୍ଦ୍ର ଗିଳିଗଲା, ଚପାକୁ ଗିଳେ ଲଙ୍ଗଳ,
ସପତ ସମୁଦ୍ର କୂର୍ମ ଗିଳିଗଲା, ବୃକ୍ଷକୁ ଗିଳିଲା ଫଳ । ୨ ।
ଷଡ଼ମୁଖୀ ଗାଈ ଦୁଧ ପହ୍ନାଉଛି, ବାଛୁରି ପିଉଛି ଲଞ୍ଜ,
ସାତପୋଏ ସ୍ତ୍ରିରି ନାମ ନ ପଡ଼ିଲା ସଂସାର ଗୁଣ୍ଠୁଛି ବାଞ୍ଝ ।
ଜାଣିବା ଲୋକକୁ ଦାଣ୍ଡ ପଡ଼ିଅଛି ନ ଜାଣିବା ଲୋକେ ଅନ୍ଧ,
ଭାବରେ ଭଣିଲେ ଶ୍ରୀ ଅଚ୍ୟୁତ ଦାସ ଦୟା କଲେ ଆଦିକନ୍ଦ ।

—:୦:—

## ୮—ରାଗିଣୀ-ଚଉଦ ଅକ୍ଷରୀ

ଅଶୂନ୍ୟ ହୋଇଣ ଯେ ଥିଲାକ ଏକ ସ୍ଥାନ
ଅଦଭୁତ ସ୍ୱରୂପେ ହୋଇଲା ଏକ ଶୂନ୍ୟ । ୧ ।
ସେହି ଶୂନ୍ୟ ମଧ୍ୟରେ ଯେ ନିରାକାର ସ୍ଥିତ ।
ନିରାକାର ଅଙ୍ଗରୁ ପରମ ବ୍ରହ୍ମମୂର୍ତ୍ତି । ୨ ।
ପରମ ବ୍ରହ୍ମଠାରୁ ସ୍ଫୁରିଲାକ ଧ୍ୱନି ।
ଯେ ଧ୍ୱନି ସ୍ଫୁରିଲା ମେ ଚତୁର କଲା ଯୋନି । ୩ ।

ଉତ୍ତୁଃକାଳେ ବୁନ୍ଦୁରକେ ହୋଇଣ ଜବାଟି ।
ଅର୍ଦ୍ଧମାତ୍ରା ମଧରେ ବଜ୍ରକଳା ପାଲଟି । ୪ ।
ସୁଷୁମ୍ନାଙ୍କ ଷଡ଼ଚକ୍ର ଅଧଃ ଊର୍ଦ୍ଧ୍ୱଠାଇଁ ।
ଯଷ୍ଟି ନ ପାରଣ ଉର୍ଦ୍ଧ୍ୱେ ଲେଉଟିଲା ବାଇ । ୫ ।
ସେ ବାୟୁ ଲେଉଟିଣ ବଙ୍କନାଳ ଭଜାଣି ।
ଲଗିଲାକ ଲକ୍ଷ୍ୟ ଜ୍ୟୋତି ମଣ୍ଡଳକୁ ପୁଣି । ୬ ।
ଶ୍ୱେତ ତିଳକ ଉପରେ ଲଗିଲାକ ଲକ୍ଷ୍ୟ ।
ଲକ୍ଷ୍ୟ ଲଗନ୍ତେଣ ଯେ ଦିଶିଲା ଶୂନ୍ୟମୟ । ୭ ।
ଶୂନ୍ୟ ଦିଶନ୍ତେଣ ଯେ ଅଶୂନ୍ୟ ଦୃଶ୍ୟ ହୁଏ ।
ଭଣନ୍ତି ଅଚ୍ୟୁତ ଗୁରୁ ଅକ୍ଷରର ଲକ୍ଷ୍ୟେ । ୮ ।

—୦*୦—

## ୪—ଷୋଳ ଭଜନ

ଗୁରୁ ଅକ୍ଷ ଖଟି ହୋ ଗୁଠ,
ଯେବେ ପଢ଼ିବଟି ଅପଢ଼ା ପାଠ,
ମାତା ପାଦେ ଖଟ   ଛୁଡ଼ି ଦେବ ବାଟ
ଯେବେ ଭେଟ ଯାଇଁ ପରମ ମଠ । ପଦ ।
ପ୍ରଥମରେ ଷଡ଼ ଅଭର୍,
ଏକ ଦଶ ସଙ୍ଗେ ନବାର,
ପ୍ରକୃତି ପଚିଶ   ଜଳେ ହେଲେ ନାଶ,
ଫିଟିଯିବ ଅନ୍ଧକାର କବାଟ । ୧ ।
ଗୁରୁ ପଦେ ଯାଇଣ ଖଟ,
ଖଡ୍ଗ ଧର ମୁଣ୍ଡୁଲା କାଟ,
ପ୍ରଥମରେ ଗାର   ଅକାର ଉକାର,
ଉକାର ଏକାର ଐକାର ବାନ୍ଧ । ୨ ।

ନସ୍ତୁଦେବ ଛନୋଟି ଗାର,
ଗ୍ଣୃରଗାରେ ବେଦ ବଗୃର,
ପଞ୍ଚ ଆତ୍ମା ଜାଣ ଛଅରେ ଛନ୍ଦଣି
ସାତରେ ଦେଖିବ ଯୋଗର ବାଟ । ୩ ।
ଅଠ ଘରେ କରିବ ଧ୍ୟାନ,
ନବ ଘରେ ଭକ୍ତି ପ୍ରଦାନ,
ଭକ୍ତି କଲେ ମୁକ୍ତି ଦିଅନ୍ତି ଶ୍ରୀପତି,
ତେବେ ଯାଇଁ ପିଣ୍ଡ ହେବଟି ମୋକ୍ଷ । ୪ ।
ଦଶ ଘରେ ଦଶ କବାଟ,
ଏକାଦଶ ଇନ୍ଦ୍ର ଅକଟ,
ଦ୍ୱାଦଶେ ଶବଦ ଅନାହତ ନାଦ
ତ୍ରୟୋଦଶ ଘରେ ଗୁରୁଙ୍କ ଭେଟ । ୫ ।
ଚତୁର୍ଦ୍ଦଶ ଭୁବନେ ବଜେ,
ପଞ୍ଚଦଶ ଅର୍ଦ୍ଧାତ୍ମା କାର୍ଯ୍ୟେ,
ଷୋଳ କଳା ସ୍ଥିତ କହନ୍ତି ଅଚ୍ୟୁତ
ନ ପଢ଼ିଲେ କାହିଁ ଗୁରୁଙ୍କ ଭେଟ । ୬ ।

—○*○—

## ୧୦—ଚତୁର୍ଦ୍ଧା ରୂପ ଭଜନ ଓ ଆତ୍ମା ଦର୍ଶନ

ଏହୁ ମନ ସିନା ଚତୁର୍ଦ୍ଧା ମୂରତି, ହେ ମୂଢ଼ମତି । ପଦ ।

ମନ କହେ ଚଇତନ ହେତୁରେ ଦେଖିବୁ ବ୍ରହ୍ମ,
ଏ ତତ୍ତ୍ୱ ଗୃର ବେଦେଣ ଦଣ୍ଡିବ ନାହିଁ ଶମନ,
ସନକାଦି ମୁନି ଧ୍ୟାଉଛନ୍ତି ହେ । ୧ ।
ନ ଖୋଳ ତଡ଼ାଗ କୂପ ଦେଉଳ ଟେଣା ନ ଗୋପ,
ସ୍ଥାପନା ଦିଅଁ ନ ସ୍ଥାପ ନ ଯା ବୃନ୍ଦାବନ ଗୋପ,
ନ ଯା ତ୍ରିବେଣୀ ପ୍ରୟାଗ ଚୋମତି ହେ । ୨ ।

ଜଟା କୌପୀନ ନ ଧର ତିଳକ ମାଳା ନ କର,
ଭସ୍ମ ଅଙ୍ଗୁ ପରିହର ଏ ଜ୍ଞାନ ହୃଦେ ନ ଧର,
ଗଙ୍ଗାକୂଳେ ନାହିଁ ସଦଗତି ହେ । ୩ ।
ଅପ୍ପାକୁ ଅପ୍ପାରେ ଦେଖ, ଦେଖିଲେ ପାଇବୁ ସୁଖ,
ସକଳ ସୁଖ ଉପେକ୍ଷ, ଜ୍ଞାନ ଲଭିବୁ ପ୍ରତ୍ୟକ୍ଷ,
ଭାବ କହେ ପାମର ଅଚ୍ୟୁତ ହେ । ୪ ।

---

## ୧୧—ଜରା ମୃତ୍ୟୁ ଭଜନ

ନ ଭଜିଲୁ କୃଷ୍ଣ ନାମରେ ବାଇମନ
ଏ ମର୍ତ୍ତ୍ୟ ମଣ୍ଡଳେ ଜନମ ହୋଇଲେ
ଅବଶ୍ୟ ଅଟଇ ନେବ ଯମ ରେ । ପଦ ।
ଯେତେବେଳେ ଥିଲୁ ଜନନୀ ଜଠରେ,
ଜଳରେ ଯେସନେ ମୀନ ।
ମଳମୂତ୍ର ବେଢ଼ି ମଧ୍ୟରେ ରହିଲୁ
ଖେଳାଇରେ ଉନାଶ ଦିନ ରେ । ୧ ।
ଗର୍ଭରୁ ପଡ଼ିଲୁ ମହୀରେ ରହିଲୁ
ଅନ୍ତୁଡ଼ିରେ ଥିଲୁ ଶୋଇ ।
ଏହିପରି ଛୋଇ କେତେ ଦିନ ଗଲା,
ଗୋବିନ୍ଦ ଭଜିଲୁ ନାହିଁ ରେ । ୨ ।
ବାଳୁତଙ୍କ ସଙ୍ଗେ ଖେଳି ରସରଙ୍ଗେ,
ବାଇ ପ୍ରାୟେ ବୁଲି ବୁଲି ।
ଯୁବା ବୟସରେ କାମ ବାଧା କଲା,
ଭବସାଗରେ ବୁଡ଼ିଲୁ ରେ । ୩ ।
ବୃଦ୍ଧ ତୁ ହୋଇଲୁ ଅନେକ କହିଲୁ
ଦୟା ଧର୍ମ ଛାଡ଼େ ନାହିଁ ।

ଭଣଇ ଅଚ୍ୟୁତ ପଦ୍ମପାଦ ଚିନ୍ତ
ଏ ଦେହ ପାଇବୁ ନାହିଁ ରେ । ୪ ।

---

## ୧୨—ହଂସ ଭଜନ

ବାଇମନ ହୋ, ବସି ହଂସକୁ ଖେଳା
ହଂସ ଉଡ଼ିଗଲେ ବୁଡ଼ିବ ଭେଳା । ପଦ ।
ପୋଖରୀ ଗୋଟିଏ ଗୁରୁ ଚୌଦିଶେ ।
ଜମ୍ବୁ ପାଣ୍ଡିଅଛୁ ଅଣ୍ଡିରା ହଂସ । ୧ ।
ଶୁଖିଲ ପୋଖରୀ ମାରେ ଲହଡ଼ି ।
ଜମ୍ବୁ ଅଛୁ ତୁଅ ଗଲଣି ଉଡ଼ି । ୨ ।
ଜମ୍ବୁ ଗୋଟିକେ ତିନି ତିନି ତୁଅ ।
ସୁଜ୍ଞାନୀ ହୋଇଲେ ଛଡ଼ିବ ଏହା । ୩ ।
ସର୍ପକୁ ମଣ୍ଡୁକୀ କରୁଛି ଗେଲ ।
ଯୁଇ ବୃକ୍ଷେ ଅଛି ମନ୍ଦାର ଫୁଲ । ୪ ।
ଏକ ଦେଉଳରେ ଦଶ କବାଟ ।
କେଉଁଠାରେ ଅଛି କଳପ ବଟ । ୫ ।
ଶୂନ୍ୟରେ କାହୁଁ ବାଜୁଅଛି ବୀଣା ।
କେଉଁଠାରେ ଅଛି ଗୋପ ପାଟଣା । ୬ ।
ଗୀତ ଷଡ଼ପଦ ଅର୍ଥ ବହୁତ ।
ଭାବରେ ଭଣିଲେ ଦୀନ ଅଚ୍ୟୁତ । ୭ ।

---

## ୧୩—ଚାଳ ପଡ଼

ଅମଳ କମଳ ଚରଣକୁ ମନ, ଭ୍ରମର ତୁ ଉଡ଼ି ଯାରେ ।
କମଳା ସେବିତ କୋମଳ ଚରଣେ
ନୀରନ୍ତରେ ଟିକେ ଥାଅରେ । ପଦ ।

ଯେଉଁ ପାଦପଦ୍ମୁ ଅଷ୍ଟାଦଶ ଶମ୍ଭୁ,
ଗଙ୍ଗା ଆଦ କରି କୋଟି ତୀର୍ଥମାନ
ଝରୁଅଛି ସଦା, ଅଭୟ ଅମୃତ
ପାନକର ତୁ ମନ୍ଥାରେ । ୧ ।
ଯେଉଁ ପାଦ ଲାଗି ଅହଲ୍ୟା ମୁକତ,
ଯେ ପାଦ ଧୋଇ ପିଇଲା କଇବର୍ତ୍ତ,
ସେହୁ ପାଦେ ଧ୍ୟାୟି, ରାବଣର ଭାଇ,
ଲଙ୍କା କଟକେ ରାଜା ରେ । ୨ ।
ଯେଉଁ ପାଦ ସେବି ଋଷି ମାର୍କଣ୍ଡ,
ପ୍ରଳୟ ଜଳରେ ଦେଖିଲେ ବ୍ରହ୍ମାଣ୍ଡ
ସେହୁ ପାଦେ ଲେପି ଅଗୁରୁ ଚନ୍ଦନ,
ସୁନ୍ଦରୀ ହେଲା କୁବୁଜା ରେ । ୩ ।
ବାଲି ଉଗ୍ରସେନ ସୁଗ୍ରୀ ହନୁମାନ
ଯେଉଁ ପଦ୍ମପାଦେ ପଶିଲେ ଶରଣ
ଗମ୍ଭୀର ଜଳରେ ଗଜ ଉଦ୍ଧାରଣ
ସେହି ପାଦେ ବନ୍ଧୁ ଯାଅରେ । ୪ ।
ଧ୍ରୁବ, ପ୍ରହଲ୍ଲାଦ, ଦ୍ରୌପଦୀ, ନାରଦ
ପଞ୍ଚପାଣ୍ଡବେ ସେବିଲେ ଯେଉଁ ପଦ
ଭାବ ସେହୁ ପଦ, ରହ ସଦାନନ୍ଦ,
ଦୁଷ୍ଟ ସଙ୍ଗରେ ନ ଯାଅରେ । ୫ ।
ଯେଉଁ ପାଦପଦ୍ମେ ହର ଯୋଗ ଲୟ,
ମୃତ୍ୟୁକୁ ଜିଣି ଅଛନ୍ତି ମୃତ୍ୟୁଞ୍ଜୟ
କୃତାର୍ଥ ଗତକ ସେ ପଦ ଅଭୟ,
ତହିଁ ଚିତ୍ତକୁ ମନ୍ଥାରେ । ୬ ।
ପୁରାଣ ବର୍ଣ୍ଣିଲେ ବ୍ୟାସମୁନି ଶୁକ,
ଯାହା ଭାବୁଛନ୍ତି ସନକ ଜନକ,

ତ୍ରୈଲୋକ୍ୟନାଥ ସେ ମୁକ୍ତିଦାୟକ
ମୋକ୍ଷପଥକୁ ଧ୍ୟାଇ ରେ । ୭ ।
ସାଧୁ ସଙ୍ଗ କର ନ ଭୁଲ ତୁ ଅନ,
ସହସ୍ର ଦଳ କମଳେ ନିରଞ୍ଜନ,
କହନ୍ତି ଅଚ୍ୟୁତ ଦେଖିବୁ ପ୍ରତ୍ୟକ୍ଷ
ପଞ୍ଚ ମନ ତୁ ବୁଝାରେ ।୮।

———

## ୧୪—ଆସନ ଭଜନ

ମୂଳ ଯେ କମଳ ଗୁହ୍ୟ ଦଳକୁ ଗୁପିଣ ।
ମନ୍ଥରଙ୍କୁ ଧରିଅଣି ରଖିବ କଣ୍ଠେଣ । ୧ ।
ରସକୁ ନିରୋଧ ଅଷ୍ଟାଙ୍ଗିବଙ୍କ କାଣି ।
ଷୋଳ ଡମ୍ବରୁକୁ ମେରୁଦଣ୍ଡେ ଭିଡ଼ିଅଣି । ୨ ।
ବଙ୍କୁଅଣି ତହୁଁଡ଼ିଙ୍କ ନିର୍ଭରେ ଜଗିବୁ ।
ପ୍ରାଣ ପଞ୍ଚଙ୍କ ବାଟ ଲୟ ଲଗାଇବୁ । ୩ ।
ଦକ୍ଷିବଙ୍କ ଜ୍ୟୋତି ବର୍ଣ୍ଣ ଅଗ୍ନି କଣା ଜାଣି ।
ଏ ଯୋଗରେ ଥିଲେ ଭବଭୟ ପାରେ ଜିଣି । ୪ ।
ତେବେ ସେ ପରମହଂସ ସାଗରେ ବହିବ ।
ଇଚ୍ଛାସୁଖେ ଅମୃତ ପିଇଣ ତହିଁ ଥିବ । ୫ ।
ଯୋଗ ସାଧି ନ ପାରିଲେ ନାମ ଅଶ୍ରେ କର ।
"ରା" ଯେହୁ "ମ" ସେହୁ ନିଗମରେ ଭର । ୬ ।
ନିରାକାର ବ୍ରହ୍ମପଦେ ସର୍ବ କର୍ମ ଦେଇ
ରହ ତୁ ନିଶ୍ଚିନ୍ତେ ତୋର କିଛି ଭୟ ନାହିଁ । ୭ ।
ଏହି ଭାବେ ନିତ୍ୟ ଶୁଦ୍ଧ ହୋଇଥିବୁ ଦାସ ।
ଆସନରେ କହୁଛନ୍ତି ଅଚ୍ୟୁତ ଯେ ଦାସ । ୮ ।

( ୧୫ )

ଭଜ ରେ ମନ ରାମ ନାମ ଏକା ଅକ୍ଷର ।
ଅକ୍ଷର ଦନେ ଛୁଟିଯିବ ଗୃହର ଠୋର । ପଦ ।
ଅତଳ ବିତଳ ତଳାତଳ ମହାତଳ ରସାତଳ ।
ତହିଁରୁ ବାହାର କାମ ବିକାଳ ନ ଭିବି ଡଗର । ୧ ।
ପଡ଼ିଲେ ପଡ଼ିବ ପଶ୍ଚିମେ ଠଣା,
ଗୃହ ଦରଦାର ହୋଇବେ ବଣା,
ଗଡ଼ର ନାୟକ ଖାଅନ୍ତେ ଚାବୁକ,
ଦେଖି ପଳାଇବେ ସକଳ ଲୋକ
ଅସିଲେ ନାଶକର । ୨ ।
ଜନ ଅବତରେ ଜନମ ଗଡ଼,
ଅଠର ନଳାରେ ପଡ଼ିବ ଭଡ଼
ନଅଣ ବାଣୁଆ ଗୃହ ଧାନୁକୀ,
ଯୁଦ୍ଧ ଲଗିଥିବଟି ଝିଙ୍କାଝିଙ୍କି
ସମସ୍ତେ ହୋଇବେ ବାସି ଉପାସିଆ,
ଖୁଆଇ ପିଅଇ ଶୁଖାଇଣ ଦେବେ
ତ୍ରିବେଣୀ ଧାର । ୩ ।
ଜଳ ଶୁଖିଗଲେ ମରିବ ମୀନ,
ବକ ଉଡ଼ିଯିବ ଶୂନ୍ୟ ଭୁବନ
ହଂସ ଉଡ଼ିଯିବ ହଂସୁଲ ଚଳିବ,
ମୃତ୍ତିକା ଘଟ ଯେ ପଡ଼ି ରହିଥିବ,
କହନ୍ତି ଅଚ୍ୟୁତ ନେମାଳ ଗ୍ରାମରେ
ବେଙ୍କୁ ନାମ ଅଶେଷ କର । ୪ ।

———

## ୧୭—ଜଗନ୍ନାଥଙ୍କ ଜଣାଣ

ଦୀନବନ୍ଧୁ ହେ, ମୋ ଦୁଃଖ ନ ଗଲା ଯେ ।

ତୁମ୍ଭେ ଦୀନବନ୍ଧୁ ମୋ ବନ୍ଧୁ ନୋହିଲେ
ମୋ ବନ୍ଧୁ ହୋଇବ କେ । ପଦ ।

ଦୀନବନ୍ଧୁ ବୋଲି ଯାହାକୁ ବୋଲନ୍ତି
ସେହି ତ ପରମ ଯୋଗୀ ।
ଦୁଃଖୀ ଲୋକଙ୍କର ଦୁଃଖ ନିବାରଣ,
ସୁଖୀ ଲୋକଙ୍କର ତ୍ୟାଗୀ । ୧ ।

ଅତି ଅରତରେ ମୃଗୁଣୀ ଡାକିଲା
ଇନ୍ଦ୍ରକୁ ପେଷିଲ ହରି ।
ମୃଗୁଣୀ ଅରତ ଫେଡ଼ି ଜଗନ୍ନାଥ
ତାହାର ମାନ ଉଦ୍ଧାରି । ୨ ।

ତୁଳସୀର ଜଟ, ତୁଳସୀ ମୁକୁଟ,
ତୁଳସୀ ଭୂଷଣ ହୋଇ ।
ତୁଳସୀ ଚଉରୀ ପାଶେ ଅନାଇଲେ,
ମଙ୍ଗଳଚକ୍ର ଦିଶୁଥାଇ । ୩ ।

ମେଦନୀର ଭାର ସଙ୍କଟ ପଡ଼ିଲା
ପଥରକୁ କଲି ଭେଳା ।
ଅକୂଳ ସମୁଦ୍ରେ ମୋ ଭେଳା ଭାସୁଛି,
ପାରିକର ଚକାଡୋଳା । ୪ ।

ସମୁଦ୍ର ତଟରେ ପକ୍ଷୀ ଡିମ୍ବ ଦେଲା,
ତାକୁ ନେଲା ରତ୍ନାକର ।
ସପ୍ତଡିମ୍ବ ତାର ଜଳରେ ଭାସିଲା,
ପାରିକଲ ଚକ୍ରଧର । ୫ ।

ଚକ୍ଷୁକୁ ଯେପରି ପିଞ୍ଛୁଡ଼ା ଆବୋରି
ଭକ୍ତକୁ ଝେଟ୍ପେ ଗୋସାଇଁ ।
ଦୀନ ଅଚ୍ୟୁତ ସେ ଭାବରେ କହୁଲେ
ପ୍ରଭୁ ପଦେ ଚିତ୍ତ ଦେଇ । ୬ ।

---

## ୧୭—ବୋହୂ ଭାବ ଭଜନ

ବୋହୂ ବାଳ ଅବଳା ରେ, ଖେଳଇ ବାର ଜଣର ।
ବାରଜଣ ଛାଡ଼ି ଝେରକୁ ଗମିଲେ,
ବୋହୂର ପୂରବ କାଳ । ପଦ ।
ଏ ବାର ଭିତରେ ପୁରୁଷ ଖେଳଇ
ସେ ବାରେ ଖେଳଇ ବୋହୂ ।
ବୋହୂ ପୁଅ ଦୁହେଁ ଉଲଟ ପାଲଟ
ବାରଣ ନ ଯାଇ କେହୁ । ୧ ।
ବାହରେ ବାର ଭିତରରେ ବାର
ବାର ବନ୍ଧଣରେ ଘର ।
ଅବାରଣ ବୋହୂ ବାରଣ ନ ଯାଇ
ବଲ୍ଲ ବାର ବାର ଘର । ୨ ।
ପୁଅକୁ ବୟସ ଶହେ ଷାଠିଏ ଯେ
ବୋହୂ ତ ଷୋଳବରଷୀ ।
ପଞ୍ଚଣ ବେଣ୍ଡିଆ ଯେଣାଙ୍କର ବୋହୂ
ଖେଳ ଖେଳୁଥାଇ ବସି । ୩ ।
ବୋହୂ ମୋର ଧନ ବୋହୂ ମୋ ଜୀବନ
ବୋହୂ ଲାଗି ଏତେ ସବୁ ।
ପାମର ଅଚ୍ୟୁତ ଭାବରେ ଭଣିଲେ
ଭର ଭବକଳ୍ପ ପାରୁ । ୪ ।

---

## ୧୮—ମନ୍ତ୍ର ଏକାକ୍ଷର ଭଜନ

ରାଗ—ଚକ୍ରକେଳି

କହୁଛି ପ୍ରଣବ ପଞ୍ଚ ଲକ୍ଷଣ ।
ଅବୋର ରହୁଥିବେ ତିନି ଜଣ । ୧ ।
ଓଁକାର ବ୍ରହ୍ମା ଦଣ୍ଡ ବିଷ୍ଣୁ କହୁ ।
କୁଣ୍ଡଳୀ ରୁଦ୍ରଦେବୀ ମହାମାଈ । ୨ ।
ତାପରେ ବିନ୍ଦୁ ଅଣାକାର ପଞ୍ଚ ।
ଆକାର ଅଛଇ ଅତି ସୁସଞ୍ଚ । ୩ ।
ଶେଷ ଅନନ୍ତ ବିରାଟ ଏ ତିନି ।
ପ୍ରବେଶ ମୂଳେ ଏହା ଥିବୁ ଚିହ୍ନି । ୪ ।
ଓଁକାର ଜାଣିଲେ ବ୍ରାହ୍ମଣ ହୋଇ ।
ଏହା ନ ଜାଣିଲେ ବୈଷ୍ଣବ ନୋହି । ୫ ।
ବିନ୍ଦୁ ରନ୍ଧ୍ର ମଧ୍ୟେ ସମସ୍ତ ଭାବ ।
ସଦଗୁରୁ ସେବି କରିବ ଠାବ । ୬ ।
ଓଁମନ୍ତ୍ର ଏକାକ୍ଷର ଏ ଅଛଇ ।
ଅଚ୍ୟୁତ ଦାସ ସ୍ୱାଭାବରେ କହି । ୭ ।

---

( ୧୯ )

ହରେ ଓଁମନ୍ତ୍ର ପ୍ରଥମେ ହୋଇବ ।
ରାମ ଅର୍ଦ୍ଧମାତ୍ରା ତା'ପରେ ଦେବ । ୧ ।
କୃଷ୍ଣ ବିନ୍ଦୁ ବ୍ରହ୍ମ ତା କୋଳେ ଥୋଇ ।
ଓଁକାରଂ ବୋଲିଣ ବୁଝିବ ଏହି । ୨ ।
ଓଁକାର ଏକାକ୍ଷର ମହାଶୂନ୍ୟ ।
ଜାଣିଲେ ଜାଣନ୍ତି ସୁଜ୍ଞାନୀ ଜନ । ୩ ।

ଅଜ୍ଞାନୀ ମୂର୍ଖ ଜାଣିବେ ବା କାହୁଁ ।
କହିଲି ସମ ହୋ ସଂଶୟ ଏହୁ । ୪ ।
ସଂଶୟ ତୁଟନ୍ତୁ ପାପ ହେଉ ବିନାଶ ।
ଓଁ କାର ବୁଝନ୍ତି ଅଚ୍ୟୁତ ଦାସ । ୫ ।

---

## ୨୦—ପଞ୍ଚାତ୍ମିକ ଭଜନ

ଏକ ଦୁଇ ତିନି ଚାରି ପାଞ୍ଚ ଛଅ ସାତ ଅଠ ନଅ ଦଶ ।
ଏକାଦଶ ଦ୍ୱାଦଶକୁ ଘେନିଣ ତ୍ରୟୋଦଶରେ ପ୍ରକାଶ ।
ରାମଚନ୍ଦ୍ର ! ପୁର ଅଟେ ଚତୁର୍ଦ୍ଦଶ । ୧ ।
ଆଦି ଚନ୍ଦ୍ର ଅଙ୍ଗେ, ପଞ୍ଚଦଶ କଳା,
ଶେଷେ ମହିମା ବିଶେଷ ।
ଷୋଳକଳା ଘେନି ଅନାଦି ରହିଲେ
ସର୍ଜ୍ଜନା କଲେ ଅଶେଷ ।
ରାମଚନ୍ଦ୍ର ! ପୁର ଅଟେ ଚତୁର୍ଦ୍ଦଶ । ୨ ।
ସିନ୍ଧୁରସ୍ତୁ ଚାରି ଷଣ୍ମୁ ଚାରି ବେଦ
ଊର୍ମି ଧୂମ୍ର ଜ୍ୟୋତି ଜ୍ୱାଳା ।
ଚାରି ଯୁଗ ଦଶ, ଅବତାର ଆଦି,
ଏହି ଚାରିରୁ ଜନ୍ମିଲା ।
ରାମଚନ୍ଦ୍ର ! ଏକୁ ଅନେକ ହୋଇଲା । ୩ ।
ଅକାର ଉକାର ଡକାର ଏକାର
ଓଁ କାର ଏ ମାତ୍ରା ପଞ୍ଚ,
ଏଥି ପଞ୍ଚଭୂତ ପଞ୍ଚବୀଜ ଖ୍ୟାତ
ହୋଇଛନ୍ତି ଏକ ସଞ୍ଚ ।
ରାମଚନ୍ଦ୍ର ! ଘଟଣା କେଡ଼େ ସୁସଞ୍ଚ । ୪ ।

ଅକାରରୁ ଫ୍ଲୀଁ, ଇକାରରୁ ଧ୍ଲୀଁ,
ଉକାରରୁ ଘ୍ଲୀଁ ବୀଜ ଜାତ,
ଏକାରରୁ କ୍ଲୀଂ, ଓଙ୍କାରରୁ ଶ୍ଲୀଂ
ଏ ବ୍ରହ୍ମ ସବୁର ତତ୍ତ୍ୱ ।
ରାମଚନ୍ଦ୍ର ! ତୁମ୍ଭ ଦେଇ ହେତୁ ତତ୍ତ୍ୱ । ୫ ।

ଗଗନ ଅକାରୁ, ସମୀର ଇକାରୁ,
ଉକାରୁ ତେଜ ସମ୍ଭୂତ,
ସଲିଳ ଏକାରୁ, ମେଦିନୀ ଓଙ୍କାରୁ,
ହୋଇ ଅଛନ୍ତି ଜାତ ।
ରାମଚନ୍ଦ୍ର ! ତୁମ୍ଭ ଦେଇ ହେତୁ ତତ୍ତ୍ୱ । ୬ ।

ଗଉର ଅକାର କୃଷ୍ଣଟି ଇକାର,
ଉକାର କୁଙ୍କୁମ ବର୍ଣ୍ଣ,
ଏକାର ଅରକ୍ତ, ଶ୍ୱେତ କୃଷ୍ଣ ଯୁକ୍ତ
ଓଙ୍କାର ସହଜେ ଶବ୍ଦ ।
ରାମଚନ୍ଦ୍ର ! ତୁମ୍ଭ ଦେଇ ହେତୁ ଜ୍ଞାନ । ୭ ।

ଘ୍ଲୀଁ ବୀଜ ଯେହୁ, ବଳଭଦ୍ର ସେହୁ,
ସୁଭଦ୍ରା ରମା ବୀଜରୁ,
ଜଗନ୍ନାଥ କ୍ଲୀଁ, ସୁଦର୍ଶନ ଧ୍ଲୀଁ,
ଫ୍ଲୀଁ ବୀଜ ପରମଗୁରୁ ।
ରାମଚନ୍ଦ୍ର ! ତତ୍ତ୍ୱ ଉଦୟ ବ୍ରହ୍ମରୁ । ୮ ।

ଅକାରରୁ ଋକବେଦ ଜନମିଲା ଇକାରରୁ ଯଜୁର୍ବେଦ
ଉକାରରୁ ସାମ, ଏକାରୁ ଜନମ,
ଅଥର୍ବ ତା ଅର୍ଥ ବେଦ,
ରାମଚନ୍ଦ୍ର ! ଓଁ କାରରୁ ଶିଶୁବେଦ । ୯ ।

ଚବିଶ ବତିଶ ଚଉଷଠି ସସ୍ର ମନ୍ତ୍ର ଅଙ୍ଗରେ ପ୍ରକାଶ
ଏ ତତ୍ତ୍ୱ ବୁଝିଲେ ନରେନ୍ଦ୍ର ହୋଇବ ଆଉ ନ ଥିବ ସନ୍ଦେଶ ।
ରାମଚନ୍ଦ୍ର ! ପୁର ଅଟେ ଚତୁର୍ଦ୍ଦଶ । ୧୦ ।
ମୂଳ ଭଜନ ଅଟଇ ହଂସ ସେତୁ ଗମେ ମହାଶୂନ୍ୟ ଦେଶ,
କହନ୍ତି ଅଚ୍ୟୁତ ଶ୍ରୀଗୁରୁ ପଦ୍ମର ସେବାଲେ ହୋଇବୁ ଦାସ
ରାମଚନ୍ଦ୍ର ! ପୁର ଅଟେ ଚତୁର୍ଦ୍ଦଶ । ୧୧ ।

---

## ୨୧—ମହାପୁରୁଷ ଜଗନ୍ନାଥ ଦାସଙ୍କ ଭଜନ

ଭୁଲମନ ଭୁଲୁ କାହିଁକି ?
ଉଡ଼ୁଛି କାଳସଞ୍ଚାଣ ମନେ ନାହିଁ କି । ପଦ ।
ଅଇବ ଟେଣା କଳପଣା, ଛେଦ ପଡ଼ା ବେନୀ ଡେଣା
ଶୂନ୍ୟରେ ବାଜୁଛି ବୀଣା ଶୁଣି ନାହିଁକି । ୧ ।
ହାଟରେ ପାଞ୍ଚ ପାଇକ, ହେଉଛନ୍ତି ଡାକହାକ
ହାଟ ସରିଲେ ବଣିକ ଆଉ ଥାଇ କି । ୨ ।
ସୁନା ପଞ୍ଜୁରୀରେ ଶୁଆ ଦାନା ଦେଉଛେ ନୁଆ ନୁଆ
ଉଡ଼ିଗଲେ ସାଙ୍ଗ ଶୁଆ ଧରାଯାଇ କି । ୩ ।
ଭୂଲତା ମଧ୍ୟରେ ଅନା, ବିଜୁଟେ ଉଡୁଛି ବାନା
ହଜିଲେ ପରମ ସୁନା ଆଉ ପାଇକି । ୪ ।
ଓଁକାର ମଧ୍ୟରେ ଦେଖ, ଓଲଟି ରହୁଛି ହଂସ
କହେ ଜଗନ୍ନାଥ ଦାସ ଅନୁସରି କି । ୫ ।

---

## ୨୨—ଭାଗବତ ଭଜନ

ଭଗବତ ଭଜନମାଳା
ମନସୂତେ ଗୁନ୍ଥା ନ ଗଲା ବେଳା । ପଦ ।

ପ୍ରଥମ ଦ୍ୱିତୀୟ ତୃତୀୟରେ ପୁଣି ବ୍ରହ୍ମାଣ୍ଡ ସର୍ଜନା ଜନ୍ମ ହୋଇଲା । ଚତୁର୍ଥରେ ଧ୍ରୁବ ତପ ଆଚରଣ, ପୁରଞ୍ଜନ ଦିବ୍ୟ ଜ୍ଞାନ ପାଇଲା ।୧। ପଞ୍ଚମରେ ପୃଥ୍ୱୀ ସପ୍ତଭାଗ କରି, ବାଣ୍ଟିଣ ଭରତ ପ୍ରବନ୍ଧ ଦେଲା । ଷଷ୍ଠେ ପାପୀ ଅଜାମିଳ ଅନ୍ତଃକାଳେ ନାରାୟଣ ନାମ ମୁଖେ ଧରିଲା । ୨ । ସପ୍ତମସ୍କନ୍ଧରେ ପ୍ରହ୍ଲାଦ ଜନ୍ମ ହିରଣ୍ୟାକ୍ଷ ବିଦାରଣ ହୋଇଲା । ଅଷ୍ଟମରେ ପୁଣି ସମୁଦ୍ର ମନ୍ଥନ ଗଜ କୁମ୍ଭୀରଙ୍କ ଯୁଦ୍ଧ ଲାଗିଲା ।୩। ନବମସ୍କନ୍ଧରେ ବଂଶାନୁଚରିତ ଦଶମେ କହ୍ନାଇ ଜନମ ହେଲା । ଗୋପ ବୃନ୍ଦାବନ ମଥୁରା ଦ୍ୱାରକା ବାଲ୍ୟଲୀଳା ଭାବ ଏଥିଁ ସରିଲା ।୪। ଏକାଦଶ ସ୍କନ୍ଧେ ତତ୍ତ୍ୱନିରୂପଣ, ଉଦ୍ଧବେ ଶ୍ରୀହରି କରୁଣା ହେଲା । ଦ୍ୱାଦଶ ସ୍କନ୍ଧରେ ଅଗତ ଭବିଷ୍ୟ ସଂକ୍ଷେପେ କେବଳ ବର୍ଣ୍ଣନା ହେଲା।୫। ପ୍ରଥମଠାରୁ ଦ୍ୱାଦଶ ସ୍କନ୍ଧ ଯାଏ ଶୁକ ମୁଖଁ ପରୀକ୍ଷିତ ଶୁଣିଲା । ଶ୍ରୀକୃଷ୍ଣ ଚରଣେ ଚିତ୍ତବୃତ୍ତି ରହୁ, ଜଗନ୍ନାଥ ଦାସ ଗୀତ କହିଲା । ୬ ।

---

## ୨୩-ଏକାକ୍ଷର ପ୍ରଶ୍ନ

( ରାଗ—ଗୈରିକ )

ଏକାକ୍ଷର ବ୍ରହ୍ମ ପୁଣି    ଜାଣଇ ସେ ସୁବ୍ରାହ୍ମଣ
ନ ଜାଣିଲେ କେବେହେଁ ବ୍ରାହ୍ମଣ ନୋହଇ ।
ଅଣ୍ଡ ବସ୍ତୁ ଏକ କରି,    ପ୍ରଣବ ଶରୀରେ ଭରି
ତାକୁ ବ୍ରହ୍ମ ପଞ୍ଚାତ୍ମକ ନାମ ବହଇ ।
ଚତୁର୍ଦ୍ଦଶ ଅଣ୍ଡେ ରହିଲା ।
ଅପରେ ପଞ୍ଚମ ବିନ୍ଦୁ କେନ୍ଦ୍ର ହୋଇଲା । ୧ ।

କାମବୀଜ କହୁଁ ହୋଇ ପଞ୍ଚମୂର୍ତ୍ତି ନାମ ବହି,
ଏଥୁ ତତ୍ତ୍ୱ କେମନ୍ତ ପ୍ରକାରେ ହୋଇଛି ।
ଅଙ୍ଗ ଦେହ କେ କେ ତହିଁ, କେମନ୍ତେ ଅଛନ୍ତି ରହି,
ଏ କଥା ତ ମନକୁ ଗହନ ଲାଗୁଛି ।
କହ ଭେଦ କାମବୀଜର ।
ଲଭିଛି ପରମ ଗତି ସୁଖ ସାଗର । ୨ ।

ରତିର ଅକ୍ଷର କେତେ ପ୍ରୀତିର ଅକ୍ଷର କେତେ
ଶ୍ରୁତିର ଅକ୍ଷର କେତେ ହୁଏ ବିସ୍ତାର ।
କେ କାହାକୁ କେତେ ଛଡ଼ା କେ କାହାକୁ କରେ ଯୋଡ଼ା
କେମନ୍ତ ପ୍ରକାରେ ଏ ହୋଇଛି ବିସ୍ତାର ।
କେହୁ ଭଜ ଲଭେ କାହାକୁ ।
ଫେଡ଼ାଇ ମିଶାଇଦେଲେ ଥିବୁ ମନକୁ । ୩ ।

ଯେଉଁ ପ୍ରଭୁ ଜଗନ୍ନାଥ ତହିଁ ସିନା ସବୁ ତତ୍ତ୍ୱ
ଶୁକଳ ଗଙ୍ଗର ରଙ୍ଗ କଳା ବୋଲନ୍ତି ।
ଏମନ୍ତେ ଗୁରୁ ହୋଇଲା ଅପରେ ଗୁରୁ କହିଲା
ଶ୍ରୀନୀଳକନ୍ଦରେ ବିଜେ ଚତୁର୍ଦ୍ଧା ମୂର୍ତ୍ତି ।
କେହୁ ମିଶି ପଞ୍ଚ ହୋଇଲା ।
ଏ ଭେଦ ଜାଣିବା ପ୍ରେମ କାହୁଁ ଆଇଲା । ୪ ।

ଯନ୍ତ୍ରରେ ପଞ୍ଚାଙ୍ଗ ହେବ ମନ୍ତ୍ରେ ପଞ୍ଚତତ୍ତ୍ୱ ଥିବ
ତନ୍ତ୍ରରେ କହିବ ପଞ୍ଚତତ୍ତ୍ୱ ମିଶାଇ ।
ପଞ୍ଚତତ୍ତ୍ୱ ଯେ ଜାଣିବ ତାକୁ ବୋଲି ସୁବୈଷ୍ଣବ
ମୋତେ ଜ୍ଞାନ ଅଜ୍ଞ ହେବ ସୁଜ୍ଞାନ ଯେହୁ
ଗୁରୁସେବା ଏଥିକି ସିନା ।
ଭଣେ ଜଗନ୍ନାଥ ଦାସ ପଦ୍ମଲୋଚନା । ୫ ।

## ୨୪—ଏକାକ୍ଷର ଉତ୍ତର

( ପୂର୍ବ ରାଗ )

ଶ୍ରୀ ଜଗନ୍ନାଥଙ୍କ ରୂପ ଅଶେଷ କରୁଣାକୂପ,
ସକଳ ମନ୍ତ୍ରଙ୍କ ଭୂପ ଷୋଡ଼ଶାକ୍ଷର ।
ସର୍ବଦା ବପୁରେ ଧରେ କମେଣ ଷଟଚକ୍ରରେ,
ଯନ୍ତ୍ରବପୁ ଧରି ମନ୍ତ୍ରେ କରେ ବିହାର ।
ଅଦ୍ୟଚକ୍ରେ ଊର୍ଦ୍ଧ୍ୱମଣ୍ଡଳେ ।
ବେନି ପାଶେ କାମ-ବୀଜ ବସେ ଯୁଗଳେ । ୧ ।
ଗୋପୀଜନ ଗୁରୁବର୍ଣ୍ଣ ବସନ୍ତି ଏ କଣ୍ଠସ୍ଥାନ,
ହୃଦଚକ୍ରେ ବସେ ବ, ଲ, ଅକ୍ଷର ବେନି ।
ଭ, ଯ୍ୟ, ଏ ବେନି ଅକ୍ଷର ବସନ୍ତି ନାଭିଚକ୍ରର,
ଲିଙ୍ଗଚକ୍ରେ ବସେ ବୈଶ୍ୱାନର ଭବାନୀ ।
ଉଦନ୍ତରେ ଆଧାର ସ୍ଥାନେ ।
ରମାବୀଜ ବେନି ବସେ ସର୍ବଦା ବନେ । ୨ ।
ପୁଣ ପରି ବୀଜ ଦୁଇ ଭଜସ୍ୱ ପାଖୁଣେ ରହି,
ଚକା ବଇଠିଛୁ ମୂଳ ବାହୁ ଆବୋରି ।
ଏମନ୍ତେ ଏ କ୍ଷେତ୍ରବର ପ୍ରେମଦ ଷୋଡ଼ଶାକ୍ଷର,
ଶ୍ରୀ ଜଗନ୍ନାଥ ବପୁରେ ଅଛନ୍ତି ଧରି ।
ଯେସନ୍ତେ ସୂର୍ଯ୍ୟ ରଥ ଆକାଶେ ।
ମାନବ ଦୃଷ୍ଟିକି ଚକ୍ରବର୍ଣ୍ଣ ନ ଦଶେ । ୩ ।
ଓମନ୍ତ ଯେ ଏକାକ୍ଷର ପ୍ରକଟ ନୀଳକନ୍ଦର
ପ୍ରଣବ ସହିତେ କ୍ଷେତ୍ରବର ହୋଇଛି ।
ଅର୍ଦ୍ଧମାତ୍ରା ଊର୍ଦ୍ଧ୍ୱେ ବିଜେ ବିନ୍ଦୁ ଦାରୁବ୍ରହ୍ମ ଶୋଭେ,
ପରଂବ୍ରହ୍ମ ବ୍ୟାପିଣ ଅଖିଳ ମୋହୁଛି ।

ଅକାର ଉକାର ମକାର ।
ଋକ୍ ସାମ ଯଜୁ ଅଥର୍ବ ପ୍ରଣବାକ୍ଷର । ୪ ।
ମହାବିରାଟ ବିଶ୍ୱବଟ    ଏ ବିରାଟୁ ସେ ବିରାଟ
ବିରାଟୁ ଅଖିଳ କୋଟି ହୁଏ ପ୍ରକଟ ।
ସ୍ଥାବର ଜଙ୍ଗମ କୀଟ    ପତଙ୍ଗାଦି ଯେତେ ଘଟ
ତହିଁ ଜୀବ ବଳଦେବ ଶ୍ରେଷ୍ଠ କନିଷ୍ଠ ।
ଜଗନ୍ନାଥ ପରମ ରୂପୀ ।
ପ୍ରକୃତି ଅଂଶ ସୁଭଦ୍ରା ଅଶେଷ ବ୍ୟାପୀ । ୫ ।
ଯନ୍ତ୍ରରେ ଶ୍ରୀମୂର୍ତ୍ତି ହେଜ,    ତନ୍ତ୍ରଶାସ୍ତ୍ର ଦ୍ୱାରେ ମଜ,
ମନ୍ତ୍ରରେ ଶ୍ରୀ ଗୁରୁଦେବ ମୁଖୁଁ ଶୁଣିବ ।
ନିଜ ଅନୁଭବ ଦ୍ୱାରେ    ମିଶାଇବ ବିଶ୍ୱାସରେ
ଶ୍ରୀସନ୍ଥ ଗୋଷ୍ଠୀରେ ଏହାପରି ମଣିବ ।
ଉପାସନା ନିଷ୍ଠା ବିଧାନ,
ନାନାଦି ବିଳାସୁଁ ଶୂନ୍ୟ କରିବ ମନ । ୬ ।
ଯୋଗ ଧର୍ମେ ସ୍ପୃହା ନ ଥାଇ    ଜ୍ଞାନ ବୈରାଗ୍ୟ ନାହିଁ
ତୀର୍ଥବାସୀଙ୍କର ଏହି ଗୁପତ ଧନ ।
ଯେବା କର୍ମକାଣ୍ଡେ ରତ    ତାକୁ ନୋହେ ପରାପତ
ଜପ ତପ ହୋମ ଯଜ୍ଞ ସକଳ ଭ୍ରମ ।
କେବଳ ତା ବାସନା ଅଙ୍ଗେ,
ରତି ପ୍ରୀତି ଶ୍ରୁତି ସ୍ମୃତି ପ୍ରେମ ପ୍ରସଙ୍ଗେ । ୭ ।
ଉପାସନା ନିଷ୍ଠା ହେବ    ମେରୁ ତୁଲ୍ୟ ଫଳ ଦେବ
ଭକ୍ତ ପାଇଲେଣି ଲୋଭ ବଳାଇ ନାହିଁ ।
କେବଳ ତ୍ରିଭଙ୍ଗୀ ଠାଣି    ପୀତାମ୍ବର ବେଣୁପାଣି
ମୟୂର ଚନ୍ଦ୍ରିକା ଚୂଡ଼ା ଦେଖ ହୋ ଯାଇ ।
ନିତ୍ୟ ଭାନୁ ଜେମା ଯୁଗଳ ।
କହେ ଜଗନ୍ନାଥ ଦାସ ଧ୍ୟାନର ମୂଳ । ୮ ।

# ମହାପୁରୁଷ ଯଶୋବନ୍ତ ଦାସଙ୍କ ଭଜନ

## ୨୪—ମାତୃଗର୍ଭ ନିର୍ଣ୍ଣୟ

(ବଙ୍କନାଳକୁ ଗଲ କି ହୋ ସୁମନ—ବୃତ୍ତେ)
ବଡ଼ ମାୟାବୀ ଜୀବ ନୋହେ କାହାର
ଧନେ ନ ଭଜୁ ରାମ କୃଷ୍ଣ ଶ୍ରୀହରି । ପଦ ।

ଯେତେବେଳେ ମାତା ଗର୍ଭେ ହେଲୁ ସଞ୍ଚାର,
ଅଣାକାର ଭୂମି ସେ ଯେ ନାହିଁ ଆକାର ।
ପ୍ରଥମ ମାସେ ତୁ ଯେ ହେଲୁ ଧବଳ ବର୍ଣ୍ଣ,
ଦ୍ୱିତୀୟ ମାସେ ତୁ ଯେ ଜଳେ ଯେସନେ ମୀନ,
ତୃତୀୟ ମାସେ ତୁ ଯେ ଶୂନ୍ୟେ ମେଲିଲୁ ଡାଳ,
ଚତୁର୍ଥେ ଅସ୍ଥି ଖଞ୍ଜା ତୋହର । ୧ ।

ପଞ୍ଚମେ ନାଭିକମଳ କଲା ଭିଆଣ,
ଷଷ୍ଠରେ ବାସ୍ତରି ନାଡ଼ ଖଞ୍ଜିଲା ଜାଣ ।
ସପ୍ତମେ ନାସା ଜିହ୍ୱା ଆବର ମୁଖ କର୍ଣ୍ଣ,
ଚକ୍ଷୁ ଭ୍ରୂଲତା କାମ କମାଣରେ ନିର୍ମାଣ ।
ଗଙ୍ଗା ଯମୁନା ନଦୀ ବହଇ ଅନୁକ୍ଷଣ,
ଅପେ ମନକୁ କଲା ବଗୁର । ୨ ।

ଅଷ୍ଟମେ ଅଙ୍ଗୁଷ୍ଠି ହସ୍ତ ପାଦ ଖଞ୍ଜିଲା,
ନବ ମାସେ ଚମଡ଼ାକୁ ଚାକୁଣୀ ଦେଲା ।
ଦଶ ମାସରେ ଟେକ କଲା ହୋଇ ହରଷ,
ସ୍ତୁତି ଯେ କଲୁ ତୁହି ଦେବଦେବ ନାହିଶିଷ୍ୟ,
ଯଦି ମର୍ତ୍ତ୍ୟମଣ୍ଡଳେ ମୁହିଁ କରିବି ବାସ,
ତୋ ନାମ ଗାଉଥିବି ସୁମରି । ୩ ।

ଯେଉଁ ବ୍ରହ୍ମାଣୀ ତୋତେଛି କଲ ନିର୍ମାଣ,
ସେହୁ ତୋ ଦେହେ ବହୁଲ ଏହା ତୁ ଜାଣ ।
ରକ୍ଷିଣ ଦଶ ବାଟ ଲଗାଇଲ କବାଟ,
ସୁଷୁମ୍ନା ଦୁଆରେ ବହୁଲେ ନନ୍ଦସ୍ତୁଟ ।
ଯେବେ ପାଇବୁ ଭେଟ ମାୟାକୁ ତୁହି କାଟ,
ଗୁରୁ ସେବଣ ଦେଖ ଶ୍ରୀହରି । ୪ ।
ଜନମ ହୋଇ ପଡ଼ିଲୁ ମର୍ତ୍ତ୍ୟ ମଣ୍ଡଳ,
କୁଆଁ ବୋଲନ୍ତେଣି ସବୁ ଗଲା ପାଶୋର ।
ଅନୁଭବଶାଳେ ରହୁ ହରି ଭଜିଲୁ ନାହିଁ,
ପାଞ୍ଚ ବରଷ ଗଲା ବାଳ ସ୍ୱଭାବରେ ବହି ।
ଦଶ ବରଷେ ଧୂଳି ଘର ଖେଳିଲୁ ତୁହି,
ବାର ବରଷେ ବସ୍ତ୍ର ପିନ୍ଧୁ ହରଷ ହୋଇ।
ତେବେ ନ ବୋଲୁ ମୁଖେ ଶ୍ରୀହରି । ୫ ।
ପନ୍ଦର ବରଷେ ହେଲୁ ଅମରମତା,
ଷୋଡ଼ଏ ବରଷେ କଲୁ କାମିନୀ ଚିନ୍ତା ।
କାମିନୀ ସଙ୍ଗେ ରହି ଦିନ ହରିଲୁ ତୁହି,
ସେ ରୂପେ ଗଲା ତୋର ଯୁବା ବୟସ ବହି ।
ହରି କଥାକୁ ଦିନେ ମନେ ନ କଲୁ ତୁହି,
ହେବୁ କେମନ୍ତେ ଏ ଭବୁ ପାରି । ୬ ।
ବୃଦ୍ଧ ବୟସ ଯେ ଏବେ ହେଲା ତୋହର,
ଅବଶ୍ୟ ଦେଖିବୁ ଥରେ ଶମନପୁର ।
କହଇ ଯଶୋବନ୍ତ ଗୁରୁଙ୍କ ସେବାକର,
ସେ ନାମ ଧରି ହୃଦ ଭବୁ ହୋଇବୁ ପାର ।
ପୂର୍ବଜନ୍ମ କଲୁଷ ଚଉରୁ ହେବ ଦୂର,
ବସିବୁ ବଇକୁଣ୍ଠ ଆବୋରି । ୭ ।

———

## ୨୭—ମନବୋଧ ଭଜନ

ସୁମନ ଅରେ ମୋ ବୋଲ୍ କର ସୁସଙ୍ଗେ ସୁପଥେ ଯାଅରେ,
ଅଗାଧଜଳ, ନ ପାଇ୍ ସ୍ଥଳ, ହରି ନାମ ମୁଖେ ଗାଅରେ ।ପଦ।
ସୁମନ ପଥାକୁ କୁମନ କଣ୍ଟା ବନ୍ଧି ଜଗତକ୍କ ଯାଅରେ ।
ହେତୁ ବେକ୍ରଡ଼, ମଙ୍ଗକୁ ଅଣ୍ଟ, ଅଗପଛ କର ବାହାରେ ।୧।
ତ୍ରିଗୁଣ ମାରି, ଗୁରି ଅନ୍ଧାରି, ଆଠ ଅଖଣ୍ଡାକୁ ଗ୍ରହାଁରେ ।
ଯମ ଯେମନ୍ତ୍ରେ, ଯିବ ପରତେ ଯିବା ଅସିବାର ଗୃହାଁରେ ।୨।
ଷଡ଼ ଅରିକ, ବିନାଶ କରି, ନିଜ ବଣିଜରେ ଥାଅରେ ।
ସାଧୁ ସଙ୍ଗତେ, ବେଭାର ଯେତେ, ମୂଳ ରଖି ଲଭ ଖାଅରେ ।୩
ନ କର ହେଳା ବୁଡ଼ିବ ବେଳା ବହୁବଟି ବଡ଼ ବାଅରେ ।
ଯଶୋବନ୍ତଦାସ ଶ୍ରୀପଦେ ଶରଣ, ନୋହୁବଟି ଦେହ ସାହାରେ ।

---

## ୨୭—ନିଗମ ଗୁମ୍ଫା ଭଜନ

(ଶ୍ୟାମ ଶ୍ରୀଅଙ୍ଗ ଠାଣିରେ ସଜଣୀ—ବୃତ୍ତେ)

ସୁଜ୍ଞାନୀ ହୋ, ଶୂନ୍ୟ ମନ୍ଦରେ ବାସ,
ଜ୍ୟୋତି ଦରଶନେ ଦୁରିତ ନାଶ । ପଦ ।
ଶୂନ୍ୟ ଚିବ୍ ବୋଲ୍ ଚେଉଁ କହଇ,
ଦେଉଳ ଗୋଟି ଦଶ୍ଚୁଟି ଫଟକ,
ପାଞ୍ଚ ପଧାନ ପଚିଶ ପରଜା,
ମନ ପବନ ଦୁହେଁ ତହିଁ ରଜା । ସୁଜ୍ଞାନୀ ହୋ । ୧ ।
ତିନି ଚଉଡ଼ରେ ତିନି ବିକୁଟ,
ସେହି ସଳଖରେ ସ୍ୱର୍ଗକୁ ବାଟ,
ତହିଁ ତିନି ଧାର ନଦୀ ବହୁଛି,
ନାବ ଖଟାଇ ତରାଇ ରହୁଛି । ସୁଜ୍ଞାନୀ ହୋ । ୨ ।

ତହିଁର ଘର ପର୍ବତ ଶିଖରରେ,
ନାବ ମେଲିଛି କାଳନ୍ଦୀ ହ୍ରଦରେ,
ପଇସା କଉଡ଼ି ନ ମାଗେ କିଛି,
କାମ ଦକ୍ଷିଣ ପାର କରୁଅଛି । ସୁଜ୍ଞାନୀ ହୋ । ୩ ।
ନିଗମ ଚୋଟା ଲଗିଅଛି ବଡ଼,
ତହିଁ ଚେଣ୍ଡ୍ରା'ଳ ଚେଣ୍ଡ୍ରେ ଧୀର ଧୀର,
ନଜରେ ନଜରେ ସହଜେ ଥାଇ,
ଜନ ପ୍ରାଣୀଙ୍କର ଖବ ନ ପାଇ । ସୁଜ୍ଞାନୀ ହୋ । ୪ ।
ଦେଖିଲ କେତେ ଜୁଆସେକ ଅଛି,
ନିଗମ ଗୁମ୍ଫାରେ ହଂସ ରହିଛି,
ହଂସର ଘର ଗଗନ ଶିଖରେ,
ହଂସ ରହିଛି ନିଗମ ସ୍ଥାନରେ । ସୁଜ୍ଞାନୀ ହୋ । ୫ ।
ଦେଖିଲ ଗୋଟି ଯତନେ ନିର୍ମାଣ,
ତହିଁ ବିଜୟେ ଦେବ ନାରାୟଣ,
ହର ନାମକୁ ମୋ ନିରତେ ଅଶ,
ଭାବେ ଭଣିଲେ ଯଶୋବନ୍ତ ଦାସ । ସୁଜ୍ଞାନୀ ହୋ । ୬ ।

---

( ୨୮ )

କହୁଛି କୌତୁକ ତତ୍ତ୍ୱ ଶୁଣ ସାଧୁଜନେ ।
କୃଷ୍ଣ ନାମ ଦୃଢ଼ବ୍ରତ ଭଜ ଏକମନେ ହେ । ୧ ।
କମଳର ଭିତରେ ଭ୍ରମରର ବାସ ।
କବାଟ କିଳିଣ ରହିଛି ପରମ ହଂସ ହେ । ୨ ।
ଓଁ ତତ୍ତ୍ୱ ତାରକ ମନ୍ତ୍ର ରାମନାମ ବାଣୀ ।
ତ୍ରିବେଣୀ ଶିଖରେ ଏକା ପଢ଼ୁଛି କଳଣି । ୩ ।

ଛିଳ ଗ୍ରୈପା ଗ୍ରାମ୍ୟେ ତଥି ମଧ୍ୟରେ କବାଟ ।
ଓଁମିତ ଅକ୍ଷର ତହିଁ ହୋଇଅଛି ଗୋପ୍ୟ ହେ । ୪ ।

ଥୋପ ନାହିଁ ଝନା ସୃନେ ଲାଗିଅଛି ମୀନ ।
ଅସ୍ତୁଂଭିଣ୍ ବୁଝ ଏହା ଶ୍ରୀଗୁରୁ ବଚନ ହେ । ୫ ।
କହେ ଯଶୋବନ୍ତ ସଦ୍‌ଗୁରୁଙ୍କ ପୟର ।
ଏହା ସେବ ଭଜନ କରିବ ଏକାକ୍ଷର ହେ । ୬ ।

———

( ୨୯ )

—ପୂର୍ବରାଗ—

ଅଣି ଯେ ଅକ୍ଷର ଶୂନ୍ୟ ମଣ୍ଡଳା ଗୋଟିଏ ।
ଅଦ ଯେ ଅପର୍ଣ୍ଣା ତଥି ମଧ୍ୟୁ ଜାତ ହୁଏ ହେ । ୧ ।
ଓଁ ମିନ୍ତ ଅକ୍ଷର ତହୁଁ ହୁଏ ଉତପନ୍ନ ।
ପରମହଂସ ଅବୋଧ ସ୍ଥିତ ନିରଞ୍ଜନ ହେ । ୨ ।
ନିରଞ୍ଜନ ପୁରୁଷଙ୍କ ଦେହେ ଗୁରୁ କଳା ।
ଅବନା ଅଠ ଅକ୍ଷର ଧେନ କରେ ମେଳା ହେ । ୩ ।
ଜଦେ ଅଷ୍ଟ ଭୂମିକା ସେ ଅଠକ୍ଷର ସ୍ଥିତ ।
ବତିଶାକ୍ଷର ତାଙ୍କର ଭଜନ ଅକୃତ ହେ । ୪ ।
ଏ ଭେଦ ଜାଣିଲା ଲୋକ ନରରେ ଉତ୍ତମ ।
ଚେଣୁକର ତାଙ୍କ ନାମ ଶ୍ରୀପୁରୁଷୋତ୍ତମ ହେ । ୫ ।
କହେ ଯଶୋବନ୍ତ ଦାସ ଶ୍ରୀଗୁରୁଙ୍କ ପୟର ।
ଏହା ଭେଦ ଭଜନ କରିବ ଏକାକ୍ଷର ହେ । ୬ ।

———

( ୩୦ )

ଗାଈ ଭଲ ଭୂଲଇ ନଲୋ,
ମରଚେ ଦେଇସା ଖାଇ ।

ଗାଈ ପଛେ ଯେବେ, ଗଡ଼ଡ଼ ଥାଅନ୍ତା,
ଦେଇସା ଖାଅନ୍ତା ନାହିଁ । ପଦ ।

ଗାଈର ମହିମା କି ଦେବ ଉପମା
ଗାଈର ଶୂନ୍ୟେ ଗୁହାଳ ।
ଗାଈ ପଛେ ପଛେ ପାଞ୍ଚଟି ବାଛୁରି
ସବା ଗାଈଟି ଦୁହାଳ । ୧ ।

ଗାଈ ଗୋଳ ନେଇ କ୍ଷୀର ଦେଉଅଛି
ନାହିଁ ତାହାର ସୁମାର ।
ସେହି କ୍ଷୀରକୁ ତୁ ମନ୍ଥିଲେ ନିଷ୍ଟୟ
ଲବଣୀ ହେବ ବାହାର । ୨ ।

ସେହି ଲବଣୀକୁ ଅଗ୍ନିରେ ରଖିଲେ,
ତହୁଁ ବାହାରଇ ଘୃତ ।
ସେହି ଘୃତକୁ ତୁ ପାନୀୟ କରିଲେ
ଅଙ୍ଗହୁଏ ପୁଲକିତ । ୩ ।

ଏପରି ଗାଈକି ଘରେ ବାନ୍ଧିଅଛି
ତୋହର କାହାକୁ ଭୟ ।
କହେ ଯଶୋବନ୍ତ ସେ ପାଦେ ଶରଣ
ଗାଈକି ନାହିଁ ଉପାୟ । ୪ ।

—୦—

( ୩୧ )

ମନମତ୍ତ ଜୁହାଁଳ ଗାଈ, ଗାଈ ପଳାଇଲା ପଘା ଛିଣ୍ଡାଇ,
ସେ ଗାଈ ମହିମା ଦେବାକୁ ଉପମା
କେହି ଏତେକାଇଶ ବ୍ରହ୍ମାଣ୍ଡେ ନାହିଁ । ପଦ ।
ଗାଈ ନା ସୁବୁଦ୍ଧି, କିଏ ହେଲା ବାଘି
ଛୁଟିବା ମନ୍ତ୍ର କିବା ଜାଣଇ ।
ବାରବାଟୀ ବିଲ ପଡ଼ିଅଛି ଉଠିଅ
ଧନେ ଗାଈ ଘାସ ଖାଇଲା ନାହିଁ । ୧ ।
ତ୍ରିଗୁଣ ଦଉଡ଼ି, କଷି ବାନ୍ଧିଥିଲି
ଛିଣ୍ଡାଇ ପକାଇ ଗଲା ପଳାଇ ।
କହେ ଯଶୋବନ୍ତ ଗାଈ ପାଦେ ଆଶ
ଗାଈକି ମୋ ଦେବ କେ ସୁଧୁରାଇ । ୨ ।

———

## ୩୨—ହଂସ ପରିଚୟ ଭଜନ

( ନବ ନାଟର କାହ୍ନୁ କି ସୁନ୍ଦର—ବୃତ୍ତେ )

ଦୂତ ଟୋ ଯିବା ହଂସକୁ ଦେଖିଛି ।
ଅଣ୍ଡ ଭିତରେ ଲୁଚୁଇଛି ପକ୍ଷୀଟି । ପଦ ।
ଅପୂର୍ବ ହଂସର ତିନୋଟି ପାଦ ।
ଏକ ପାଦକେ ଘୋଟିଛି ଅଗାଧଟି । ଦୂତ ଟୋ । ୧ ।
ଏକ ପାଦ ତାର କେଶରେ ସ୍ଥିତ ।
ଏକ ପାଦ ତାର ଶୂନ୍ୟେ ଗୁପତଟି । ଦୂତ ଟୋ । ୨ ।
ଅଣ୍ଡିରା ହଂସର ଏକଇ ଡମ୍ଫ ।
ଏକ ଡମ୍ଫକେ ଘୋଟିଛି ଅଗଧଟି । ଦୂତ ଟୋ । ୩ ।

ଉମ୍ବୁ ବାହାର ଛୁଅ ଜଡ଼ଗନ୍ଧ ।
ଜଳ ଚକ୍ରକେ ଦେଉଳ ଗୁଡ଼ାନ୍ଧ । ଦୂତ ଗୋ । ୪ ।
ସେ ହଂସ ଚରଣେ ମୋହର ଆଶ ।
ଭାବେ ଭଣିଲେ ଯଶୋବନ୍ତ ଦାସ । ଦୂତ ଗୋ । ୫ ।

———

## ୩୩—ତ୍ରିବେଣୀ ଭଜନ

( ରାଗ—ଚକ୍ରକେଳି )

ପଡ଼ିଅଛୁ ବନ୍ଧ ତ୍ରିବେଣୀ ଘାଟେ ।
ବନ୍ଧ ଫାଟି ପାଣି ବହୁଛୁ ଅଣ୍ଟେ । ୧ ।
ପଡ଼ିଅଛୁ ବନ୍ଧ ପଙ୍‌କେ ଲାଗି ।
ବନ୍ଧ ତଳେ ଯୋଗୀ ବସିଛୁ ଯାଗି । ୨ ।
ପାଞ୍ଚ ପଧାନ ପଚିଶ ମୂଲିଅ ।
ବନ୍ଧ ପକାଇଲେ ହୋଇ ମେଳିଅ । ୩ ।
ପକାଇଲେ ବନ୍ଧ ହୋଇବ ଦମ୍ଭ ।
ନିଗମ ଭୂମିରେ ପୋତିଣ ଖମ୍ବ । ୪ ।
ତ୍ରିବେଣୀ କୂଳରେ ବସେ ବଜାର ।
ଦୋକାନୀ ଶକ୍ତି ତୁ ସଉଦା କର । ୫ ।
ତ୍ରିବେଣୀ କୂଳରେ ତରୀ ଅଛୁ ।
ନାମ ଶକ୍ତି କର ପାର କରୁଛୁ । ୬ ।
କହେ ଯଶୋବନ୍ତ ବନ୍ଧ ଉଜାଣି ।
ମନ ପିନା ବନ୍ଧ ପବନ ପାଣି । ୭ ।

———

## ୩୪—ମହାପୁରୁଷ ବଳରାମ ଦାସଙ୍କ ନାମ ଭଜନ

ସୁମନ, ଭଜ ରାମ କୃଷ୍ଣ ହରେ ।
ହରେ ରାମ ଯହିଁ ଅଲଟ ରାମର
ଦେ ବର୍ଣ୍ଣିପାଶର ଛାରେ । ପଦ ।

'ହ' ଅକ୍ଷର ଯେ ବଇଠେ ହୋଇଛନ୍ତି, କହଛନ୍ତି ଲୀଳା ।
'ହ'କୁ ଭଜିଲେ ହରିଙ୍କି ପାଇବୁ, ରେ ଅକ୍ଷରରେ ମିଳା ।୧।
'ରା' ଅକ୍ଷରରୁ ଅମୃତ ଝରଇ ଶିଦ୍ଧ ଲେ କରତୁ ପାନ ।
'ମ'ଅକ୍ଷରରୁ ଯେ ଗୋପନ ହୋଇଛନ୍ତି, ତାହା ସନ ଦେଇ ଚିହ୍ନ।
'କୃ' ଅକ୍ଷର ଏ କବାଟ ହୋଇଛନ୍ତି କଞ୍ଚିକ କର ଚେତନା ।
କବାଟ ଫିଟିଲେ ଦର୍ଶନ ପାଇବୁ ନ କର ଏଥି ଭାବନା ।୩।
'ଷ୍ଣ' ଅକ୍ଷରରୁ ଜନମ ହୋଇଛନ୍ତି ଏକରୁ ତିନି ମୂରତି ।
ତିନି ପରେ ମହାଜ୍ୟୋତି ବିରାଜଇ ତାର ନାହିଁ ଦିବାରାତି ।୪।
ଗୁରୁଙ୍କ ଦୟାରୁ ଅରମ୍ଭିଲି ମୁହିଁ ନ ପାଇଲି ହରିରସ ।
ସେହି ପଦ୍ମପାଦେ ଶରଣ ପଶୁଛି ଭଣେ ବଳରାମଦାସ ।୫ ।

---

## ୩୫—ସାର ଭାବ ଭଜନ

ମୁଖେ ଭଜ ରାମ କୃଷ୍ଣ ହରି ଲୋ, ସାର ।
ମାରନେବେଟି କୋଧ ମଞ୍ଜାରି ଲୋ, ସାର । ପଦ ।

ମନମସ୍ତ ଗାଈ. କଳଣା ନ ଯାଇ ନୀତି ପ୍ରତି ଖିଦା କଲା,
ତ୍ରିଗୁଣ ଦାଉଡ଼ି,କଷି ବାନ୍ଧିଥିଲି, ଛିଣ୍ଡାଇ ପଳାଇ ଗଲାଲୋ,ସାର
ଘର ତୋଳିଥିଲି, ଅତି ଯତନରେ ଗୃହକୋଣେ ଓସ୍ତ ଦେଇ,
ଘର ଛାଇଁ ଘର ପଡ଼ି ବହୁଅଛି ମଝିଓସ୍ତ ହଲି ଲଇଁ ଲୋ ସାର ।୨।
ଘର କଗୁଆଳ ପଚିଶ ପାଇକ କରି ଘର ଗେହ୍ନି ନେବେ,
ପାଞ୍ଚ ଦଣ୍ଡୁଆସି ଏକ କହୁଥିଲ, ସେହି କେଉଁଣେ
ଗୁଡ଼ିଯିବେ ଲୋ, ସାର । ୩ ।

ଯେଉଁଧନ ସଙ୍ଗେ ଜନମ ହୋଇଲୁ ନ ଚିହ୍ନିଲୁ ବାରେ ମୋତେ
ଶ୍ରଦ୍ଧା କରିକ ମନ ଶରୀର ଯେଣୁ ଯିବ ତାହା ପାଞ୍ଚୁଥିବୁ
ଲେକେତେ ଲେ ସାର । ୪ ।
ଓଠ ଚୈତା ସୁରଙ୍ଗ ଅସ୍ତ୍ର ଚୈତା ସତୁଅ ଦନ୍ତ ଚୈତା ଜାଳମ୍ବ ମଞ୍ଚି
ବଳରାମ ଦାସ ଭ୍ରବଣେ ଭଣିଲେ ଖାଲିକା ଲେ କନ୍ଧବନ୍ଧ ଲେ ।

---

## ୩୭—ବିରାଟ ଜନ୍ମ ଭଜନ

ଲମ୍ବୀଙ୍କ ଲୀଳାଙ୍କ ଭୋଗାଙ୍କ ସାର
ବିଳାସ ଅଙ୍ଗ ଯେ ତହିଁ ମଝାର । ୧ ।
ଗୁରୁ ଠାକୁରାଣୀ ଦିବ୍ୟ ମୂରତି
କିଶୋର କିଶୋରୀ ସମ୍ମୁଖେ ସ୍ଥିତି । ୨ ।
କିଶୋର କିଶୋରୀ ଭଜନେ ରତି ।
ଦୁହେଁ ଦୁହିଁଙ୍କ ପ୍ରେମେ ଜନମନ୍ତି । ୩ ।
ଦୁଇ ଅଙ୍ଗରୁ ପ୍ରେମ ଜନ୍ମିଲା ।
ପ୍ରେମରୂପା ସଖୀ ତହୁଁ ହୋଇଲା । ୪ ।
ସେ ପ୍ରେମରୁ ତାଙ୍କ ଅମୀୟ ରସ ।
ତହୁଁ ଜନ୍ମିଲା ବିରାଟ ପୁରୁଷ । ୫ ।
ସେ ପୁରୁଷର ଶ୍ୱାସ ପରଯାନ୍ତି ।
ତା ଦେହେ ରୋମ ବିଶାଳ କୋଟି । ୬ ।
ରୋମ ଗୋଟିକେ ବ୍ରହ୍ମାଣ୍ଡ ଗୋଟିଏ ।
ବ୍ରହ୍ମାଣ୍ଡ ଗୋଟିକେ ବିଷ୍ଣୁ କୋଟିଏ । ୭ ।
ଅଶେଷ ବ୍ରହ୍ମାଣ୍ଡ ହେତୁ ଜପନ୍ତି ।
ଅନନ୍ତଙ୍କଠାରୁ ବିଷ୍ଣୁ ଜନ୍ମନ୍ତି । ୮ ।
ପୁଚ୍ଛରେ ନାଳାଦ୍ରି ଶିରରେ ନାଥ୍ୟ ।
ସନ୍ଥମାନଙ୍କର ପରମ ତତ୍ତ୍ୱ । ୯ ।

ଦାସାମାନଙ୍କର ମଉଡ଼ମଣି ।
ବଳରାମ ଦାସ ଭାବରେ ଭଣି । ୧୦ ।

---

## ମହାପୁରୁଷ ଶିଶୁ ଅନନ୍ତ ଦାଶଙ୍କ ଭଜନ

( ୩୭ )

କାହିଁକିରେ ବାଇମନ ଭଙ୍ଗାନାବ ପରେ ବସୁ,
ପୀୟୂଷ ରସକୁ ଛାଡ଼ି ବିଷପ୍ରାୟ ରସରେ ରସୁ । ପଦ ।
ଚନ୍ତାମଣି ନାମରେ କାଠ ଧର ହୋ ମନ ତୁରିତ,
ଶ୍ରୀଗୁରୁ ପାଦ ଅହୁଲ କ୍ଷଣେ ତୁ ନ ଛାଡ଼ ପାଶୁ । ୧ ।
କାମକ୍ରୋଧ ଲୋଭ ତିନି ଲହରୀକି ସଙ୍ଗେ ଘେନି,
ପାପ ବତାସରେ ପୁଣି ଆପଣା ତନୁକୁ ନାଶୁ । ୨ ।
ଦେଖ ଏ ମାୟା ସଂସାର, ଏଥି ନାହିଁ ଥଳ କୂଳ,
ଝାମ୍ପେ କାଳ ମହାବଳୀ ନ ଚେତ ଏଥିକି ରସୁ ।
ବୟସ ଗଲାଣି ତୋର, ନ ଭଜୁ ଗୁରୁ ପୟର,
ନିଷ୍ଟେ ହେବୁ ନାରଖାର କହନ୍ତି ଅନନ୍ତ ଶିଶୁ । ୪ ।

---

( ୩୮ )

ଅବନା ଅକ୍ଷର ଜପ, ଯିବ କୋଟି ଜନ୍ମ ପାପ,
ଅସାଧନା ମାର୍ଗେ ରହି ଆପାପକୁ ହୃଦେ ମାପ ।
ଦନ୍ତ ଓଷ୍ଟ ନ ହଲିବ, ଜିଭ କଣ୍ଠ ନ କମ୍ପିବ,
ମନ୍ତ୍ର ଯନ୍ତ୍ର ନାହିଁ ତହିଁ ଦେଖିବ ବ୍ରହ୍ମ ସ୍ୱରୂପ । ୧ ।
ବ୍ରହ୍ମା ବିଷ୍ଣୁ ସଦାଶିବ, କେହି ନ ପାବନ୍ତି ଠାବ,
ଶେଷଦେବ ନ ପାଇଲେ କୋଟିଜନ୍ମ କରି ତପ । ୨ ।
ସହସ୍ରଦଳଠାରେ ଅନା, ବିଜେ ନନ୍ଦସୁତ କହ୍ନା,
ବାମେ ଭାନୁସୁତାଜମା ଝୁଲି ଝୁଲି ବିଦ୍ୟୁତରୂପ । ୩ ।

ବାଜୁଛି ସପ୍ତ ସ୍ୱର ଶୁଭଇ କେତେ ମଧୁର,
ସେ ସ୍ୱରେ ହୋଇ ବିଭୋର ଜୀବ କରୁଥାଇ ଧାପ । ୪ ।
ନ ଯା ତୀର୍ଥ ବ୍ରତ କର ହୃଦେ ଜପ ରାମ ହରି,
ଭଣନ୍ତି ଅନନ୍ତ ଶିଶୁ ତରିବୁ ଏ ଭବ କୂପ । ୫ ।

---

## ୩୯—ହାଟ ଭଜନ

ହାଟ ଭାଙ୍ଗିବ ହୋ, ହାଟ କରିବାକୁ ନାହିଁ ।
ହାଟ ଭାଙ୍ଗୁଛନ୍ତି ପାଞ୍ଚ ସରଦାର ବହି । ପଦ ।
ଗୋଲ୍‌ହାଟ ବଟପୁଟେ ବସିଅଛି ହାଟ ।
ହାଟରେ ପଶିବେ ବୋଲି ଜଗିଛନ୍ତି ଖଣ୍ଟ । ୧ ।
ସୁବୁଦ୍ଧି ବଣିଆ ହାଟେ ପସରା ମେଲଇ ।
ନାମକୁ ମିଶାଇ ସାଧୁ ପୋଟଳା ବାନ୍ଧଇ । ୨ ।
ମନୁ ମହାପାତ୍ର ହାଟେ ଦଣ୍ଡିଆ ହୋଇଛି ।
ମହା ମତ୍ତଗଜ ହାଟ ମଧ୍ୟରେ ବାନ୍ଧିଛି । ୩ ।
ବନ୍ଧା ଖୁଣ୍ଟ ହାତୀ ଯେବେ ଅଯୋଗେ ଫିଟିବ ।
କହନ୍ତି ଅନନ୍ତ ଶିଶୁ ହାଟ ଉପୁଜିବ । ୪ ।

---

## ୪୦—ନାମତତ୍ତ୍ୱ ଭଜନ

ନାମର ମହିମା ଏବେ ଶୁଣ ହୋ ନିକର ।
ବେଦ ବେଦାନ୍ତର ନାମ ଅଟଇଟି ସାର ।
ରୂପରେଖ ନାହିଁ ନାମ ଅଟେ ନିରାକାର ।
ଅକ୍ଷରଠାରୁ ଜନମିଲା ଏକାକ୍ଷର ହେ ।୨।
ଓଁକାର ମଧ୍ୟରୁ ତ୍ର୍ୟକ୍ଷର ଜନମିଲା ।
ହ୍ରୀଁ, ଶ୍ରୀ, କ୍ଲୀଁ, ସମ୍ପୂ ବୀଜ ବୋଲିଛନ୍ତି ହେ । ୩ ।

ହ୍ଲୌଂ, ହରେ ଶ୍ରୀଁ ରାମ, କ୍ଲୀଂ କୃଷ୍ଣ କହୁ ।
ଏହୁ ସପ୍ତ ତତ୍ତ୍ୱ ନାମ ବଶ୍ୱେ ପ୍ରବର୍ତ୍ତିଇ ହେ ।
ଓଁ ନାମ ସୁଦର୍ଶନ ସୁଜ୍ଞଜନେ ଜାଣ ।
ହ୍ଲୀଁ ହରେ ବଳଭଦ୍ର ହୋଇଛନ୍ତି ନିର୍ମାଣ ହେ । ୫ ।
ଶ୍ରୀଁ ରାମ ନାମ ସୁଭଦ୍ରା ସେ ଅଟନ୍ତି ।
କ୍ଲୀଂ କୃଷ୍ଣ ଜଗନ୍ନାଥ କେବଳ ନୁହନ୍ତି ହେ ।୬।
ଏହି ଦଶାକ୍ଷର ନାମ ଉପଦେଶ ଦେଇ ।
ଅନାଦି ଅଙ୍କରେ ଯେ ଅନନ୍ତ ଶିଶୁ କହି ହେ । ୭ ।

---

( ୪୯ )

## ସିଦ୍ଧପୁରୁଷ ୬ ହରିହର ନାୟକଙ୍କ ଭଜନ

( କି ନାମ ବୋଇଲୁ ତୁହି ଗୋ ଲଳିତେ—ବୃତ୍ତି )

ବୋହୂ ମୋ ନବତରୁଣୀ ଲୋ ସଜନୀ
ବୋହୂ ମୋ ନବ ତରୁଣୀ ।
ବୋହୂ ଥିଲେ ଘର ଶୋଭା ପାଉଥାଇ
ବୋହୂ ଘରକୁ କାରେଣୀ ।୧।
(ବୋହୂ) ସୁବର୍ଣ୍ଣଚନ୍ଦ୍ର ବଦନୀ ଲୋ ସଜନୀ
ସୁବର୍ଣ୍ଣ ଚନ୍ଦ୍ର ବଦନୀ
ବାଟ ପୁଣ ବାଟ ଯାଇ ଅସୁଥାଇ
ଗୁଲ ମଉଗଜ ଠାଣି ।୨।
ଗେରସ୍ତରେ ନାହିଁ ମନ ଲୋ ସଜନୀ
ଗେରସ୍ତରେ ନାହିଁ ମନ ।
ଗେରସ୍ତ ବାପୁଡ଼ା, ରୁପା ଖଣ୍ଡମୁହାଁ
ଡାକେ ଦେଇ ବଂଶୀ ସ୍ୱନ ।୩।

(ବୋହୂ) ନ ରହେ କିଷ୍ଟଲେ ଘର ଲୋ ସଜନୀ
'ନ ରହେ କିଷ୍ଟଲେ ଘର ।
ପର ପୁରୁଷଙ୍କ ବୋଲେ ପଡ଼ି ବୋହୂ
ନାଚେ ଶ୍ୱଶୁର ଅଗର ।୪।
ବୋହୂ ନୁହଇ ଭାହାର ଲୋ ସଜନୀ,
ବୋହୂ ନୁହଁଇ ଭାହାର ।
ଯେତେ ପରଭାରେ ମଣାଇ ଭଣ୍ଡିଲେ
ନ ହେନଇ ସେ ଭଣ୍ଡିର ।୫।
ନାହିଁ ଦଣ୍ଡେ ଅବକାଶ ଲୋ ସଜନୀ
ନାହିଁ ଦଣ୍ଡେ ଅବକାଶ ।
ବୋହୂ ମନ ଭଲେ ସହଜରେ ଯାଇ
ଦେଖିବ ନିତ୍ୟ ସ୍ୱହାସ ।୬।
ବାରଯୋଡ଼ କୁମ୍ଭ ଘେନି ଲୋ ସଜନୀ
ବାରଯୋଡ଼ କୁମ୍ଭ ଘେନି ।
ତ୍ରିବେଣୀ ଘାଟରୁ ନୀର ଅଣୁଥାଇ
ନିତି ଦିବସ ରଜନୀ ।୭।
ବୋହୂ ଲାଗି ଏତେ ସବୁ ଲୋ ସଜନୀ
ବୋହୂ ଲାଗି ଏତେ ସବୁ ।
ବୋହୂ ଥିଲେ ଘରେ ସମସ୍ତ ହରଷ,
ଗଲେ ଘରେ ଘରେ ଦୁର ।୮।
ବୋହୂ ପାଦେ ରତ୍ନ ମତି ଲୋ ସଜନୀ
ବୋହୂ ପାଦେ ରତ୍ନ ମତି ।
ଭଣେ ହୀନ ହର ବୋହୂ ଗଲା ମାତେ
ଘର ଅନଲେ ଦହନ୍ତି ।୯।

— — —

## ୫୦—ଯୋଗ ସାଧନା ଭଜନ

ଉଦ୍ଧବଙ୍କୁ ଗୃହିଁ ବୋଲନ୍ତି ଶ୍ରୀହରି ଗୁପତ ଜ୍ଞାନ ବଗୁର ହେ ।
ସମନ ଅସନରେ ବସିଣ ନିଷ୍ଟଳ ସ୍ଥିର କର କଳେବର ହେ ।
ଦୃଷ୍ଟି ଦେବ ନାସାଗ୍ରକୁ ।
ଚିତ୍ତେ ଧ୍ୟାଇଣ ବ୍ରହ୍ମ ରୂପକୁ ।୧।
ପୂରକ କୁମ୍ଭକ ରେଚକ ତାଟକ ଯତନେ ସାଧ କରିବ ହେ ।
ଅଳପେ ଅଳପେ ଅଭ୍ୟାସ କରିଣ ପ୍ରାଣପବନ ତୋଳିବ ହେ ।
ଦିବ୍ୟ ଅନାହତ ଧ୍ୱନି ।
ବାର ପାରିବୁ ତୁ ଚିତ୍ତେ ପୁଣି ହେ ।୨।
ମୃଣାଳ ସୂତ୍ରରେ ଅନାହତ ଦ୍ୱାରେ ଦଣ୍ଡ ନିମିଷେ ସାଧିବ ହେ ।
ଅନ୍ତର ବାହାରେ ସାଧି ନିରନ୍ତରେ, ପ୍ରାଣର ସଙ୍ଗ ଛାଡ଼ିବ ହେ
ହୃଦସ୍ଥ ପଦ୍ମ ମଧ୍ୟରେ
ଅଷ୍ଟଦଳ ମଧ୍ୟ ପାଖୁଡ଼ାରେ ହେ ।
ତାହାର ଶିଖରେ ଅଧୋ ମୁଖରେ ଲମ୍ବିଥାଇ ଯେଉଁ ଦଳ ହେ ।
ସେ ଅଷ୍ଟ ଦଳର ଊର୍ଦ୍ଧ୍ୱରେ ବିସ୍ତାର ଧ୍ୟାଇବ ରବିମଣ୍ଡଳ ହେ ।
ଚିତ୍ତେ ଚନ୍ଦ୍ରମାଳା ।
ତାର ମଧ୍ୟରେ ଚିନ୍ତ ଅନଳ ହେ ।
ସେ ଅନଳ ମଧ୍ୟେ କନକ ଆସନେ ଦଶୁଅଷ୍ଟ ଦିବ୍ୟମୂର୍ତ୍ତି ହେ ।
ଜଳଦ ସୁନ୍ଦର ଶ୍ୟାମ କଳେବର କନକ କିରଣ କାନ୍ତି ହେ ।
ମୋ ରୂପ ମନରେ ଚିନ୍ତ ।
ଅନ୍ତଃକାଳେ ଲଭ ସଦଗତି ହେ ।୪।
ଶ୍ରୀ ନନ୍ଦନନ୍ଦନ ମୁରଲି ବଦନ, ପିତାମ୍ବରଧାରୀ ହରି ହେ ।
ତାହାକୁ ଯେବେ ତୁ ଚିହ୍ନିବୁ ଉଦ୍ଧବ ଯିବ ଅଜ୍ଞାନତମିର ହେ ।
ଜ୍ଞାନାଲୋକ ହେବ ଜାତ
ଭକ୍ତି ମୁକ୍ତି ଲଭିବୁ ନିଶ୍ଚିତ ହେ ।୫।

---

## ୨୧— ଗୁରୁ ସ୍ତବ ଭଜନ

( ଗୁରୁ କଟାକ୍ଷ କଲେ ଯନ୍ତୁଁ ହୃଦରେ—ବୃତ୍ତ)

ଗୁରୁଙ୍କ ଆଜ୍ଞା ମନ ଘେନ ଚିତ୍ତରେ ।
ଗୁରୁ ବିଜୟ ନିଜ ଅନ୍ତର୍ଗତରେ । ପଦ ।

ଗୁରୁ ବ୍ରହ୍ମା ବିଷ୍ଣୁ ଗୁରୁ ଈଶ୍ୱର
ଗୁରୁଟି ସଂସାର ନାବରେ କର୍ଣ୍ଣଧାର,

ଗୁରୁ ପ୍ରାଣ ପବନ ଶ୍ରୀଗୁରୁ ହୁତାଶନ,
ଗୁରୁ ପୃଥିବ୍ୟାକାଶ, ଗୁରୁ ଅଟେ ବରୁଣ
ଗୁରୁ ଯେ ନୈଋତ ଇନ୍ଦ୍ର, ଚନ୍ଦ୍ର, ଶମନ
ଗୁରୁ ଦୁର୍ଗା କୁବେର ଗୁରୁ ଜ୍ଞାନେ ନିପୁଣ
ଗୁରୁ ଦିବସ ରାତ୍ର ପ୍ରାତଃ ସନ୍ଧ୍ୟା ପ୍ରମାଣ
ଗୁରୁ କ୍ଷତ୍ରିୟ ଶୁଦ୍ର ଗୁରୁ ବୈଶ୍ୟ ବ୍ରାହ୍ମଣ
ଗୁରୁ ସହଜେ ସ୍ଥିତ ବେଦ ମତରେ । ୧ ।

ଗୁରୁ ବୃନ୍ଦାବତୀ ଗୁରୁ କୃଷ୍ଣ ରାଧିକା
ଗୁରୁ ଦଶଦିଗପାଳ ଅଷ୍ଟନିଧିକା

ଗୁରୁ ପରମେଶ୍ୱର ଗୁରୁ ଦୟାସାଗର
ପିଣ୍ଡ ପ୍ରାଣକରତା ଗୁରୁଟି ପରାପର
ଗୁରୁ ତାର କାରଣ ଗୁରୁ ସପ୍ତ ସାଗର
ଗୁରୁ ସତ୍ୟ ତ୍ରେତୟା ଦ୍ୱାପର କଳି ଆର
ଗୁରୁ ଯେ ଜଡ଼ ବୁଡ଼ା ଗୁରୁ ଚଳ ଅଚଳ
ଜପନ କୋଟି କର ହୋଇଲେ ଜୀବକୁଳ
ଗୁରୁ ରୂପୀ ଅଚିନ୍ତ୍ୟ ଅବ୍ୟକତରେ । ୨ ।

ଗୁରୁ ବୋଲୁଛନ୍ତି ଶୁଣ ହେ ଭକ୍ତଜନ
ମାୟା ତେଜିଲେ ଲଭିବ ସୁଦିବ୍ୟ ସ୍ଥାନ

ମାୟା ମୋହ କପଟ ଅହଙ୍କାର ଲମ୍ପଟ
କାମ କ୍ରୋଧାଦି ଲୋଭ ମୋହ ଘେନିଣ କଷ୍ଟ
ଗର୍ବ ଗାଉମାପଣ ଏ ଷଡ଼ ରିପୁ ନଷ୍ଟ
ନ ଧରି ହୃଦୟରୁ ବାନ୍ଧିଛ ମନେ ଅଣ୍ଟ
ଧନ ଯୁବତୀ ସୁତ ଗୁରୁଙ୍କୁ ଦିଅ ଫିଟ
ପାରି ହୋଇଣ ଗଲ ଭବସାଗର ତଟ
ଏମାନ କର ବେଗେ ସ୍ଥିର ଶରୀରେ ।୩।
ଜପ ତପ ଦେବ ତୀର୍ଥ ଭକତି ବିନୁ
ନିଷ୍ଫଳ ହୁଅଇ ସର୍ବ ଆଗମ ଧ୍ୟାନ
ଚେଙ୍କି ଷଡ଼ ଅରି ଏକାଦଶ ନିବାରି
ପଚିଶ ପ୍ରକୃତିକୁ ବ୍ରହ୍ମାଗ୍ନିରେ ସଂହାରି
ପାଞ୍ଚ ମନକୁ ଏକ କରି ଭକତି ସିଦ୍ଧି
ସୁଖେ ବସିବ ଯାଇ ଅନନ୍ତ ଅମରପୁରୀ
କହେ ଶ୍ୟାମସୁନ୍ଦର ଦୃଢ଼ ଆଶ୍ରୟ ଧରି
ଶେଷେ ଦଣ୍ଡିବ ନିଷ୍ଠେ ଜଗନ୍ନାଥରେ ।୪।

---

## ୪୨—ଶୂନ୍ୟବାସୀ ଭଜନ

( ଭଜ ନିରବେଦ ଏହି ଶରୀରରୁ—ବୃନ୍ଦେ )

ଅହେ ସୁଜନରେ ।
ଶୂନ୍ୟ ବିହାରୀଙ୍କି ଭଜ ନିରନ୍ତରେ । ପଦ ।
ତୀର୍ଥ ବ୍ରତ ପୂଜା କରୁଅଛ, ନ ଜାଣି ବାଅର୍ଥେ ଯା ଭ୍ରମୁଛ
ନିଜ ହୃଦେ ସେହି ଛନ୍ତି ବଦେ ହୋଇ,
ତାଙ୍କ ସେବା କର ଦୃଢ଼ ଭାବରେ । ୧ ।

ଭୁଲି ଯାଇ ମାତୃଗର୍ଭ ଜ୍ଞାନ, ଜାଣି ଶୁଣି ହେଉଛ ଅଜ୍ଞାନ,
ମୃତ୍ତିକା ପାଷାଣ, ଧାତୁ ଆଦି ପୁଣି,
ପୂଜୁଥାଅ ନିଶି ଦିବସରେ । ୨ ।
ପରପାଇଁ ସମର୍ପିଲେ ପ୍ରାଣ, ତେବେ ସିନା ଲଭିବ କାରଣ
ସବୁ ଅକାରଣ, ଜଗତରେ ଜାଣ,
ଏଣୁ ମଜ୍ଜ ପର ଉପକାରେ । ୩ ।
ଜଗତକରତା ଶୂନ୍ୟରୂପ, ସଦାକାଳେ ଅଟନ୍ତି ଅରୂପ
ନାହିଁ ହସ୍ତ ପଦ, ଅଟନ୍ତି ନିର୍ବେଦ
ତାଙ୍କ ବାସ ଶୂନ୍ୟ ଶିଖରରେ । ୪ ।
ଏ ମାୟା ମୋହରେ ନୋହି ଛନ୍ନ, କାହାକୁ ଭାବିବ ନାହିଁ ଭିନ୍ନ
ଶୂନ୍ୟବାସୀଙ୍କର ସକଳ ସଂସାର,
ଚିତ୍ତ ରଖ ତାଙ୍କ ଶ୍ରୀପଦ୍ମରେ । ୫ ।
କହଇ ମୂଢ଼ ଶ୍ୟାମସୁନ୍ଦର, ମୋତେ ଶୂନ୍ୟବାସୀ ପାରକର
ଏ ଘୋର ସଂସାର, ଅଟଇ ଦୁସ୍ତର,
ନୋହିଲେ ପଡ଼ିଲି ନରକରେ । ୬ ।

---

## ୫୩—ହରେ ଶବ୍ଦ ଭଜନ

ଶୂନ୍ୟରୁ ସଞ୍ଚରି ଯେଉଁ ଚରଣ ଅଇଲ ।
ଶୂନ୍ୟପୀଠ ଭେଦି ସମଦରଶୀ ରହିଲ । ୧ ।
ଦମ୍ଭେଣ ରହିଲ ସେ ଯେ ଅବନୀ ମନ୍ତ୍ରର ।
ଅଷ୍ଟାଙ୍ଗ ପିଣ୍ଡେ ହୋଇଲ ଉଲଟ ଓଁ କାର । ୨ ।
ହରିମଧ୍ୟେ ଜଗତ ଜଗତମଧ୍ୟେ ହରି ।
'ହ' ଶବଦ ଅଶେଷ ବ୍ରହ୍ମାଣ୍ଡେ ଅଛୁ ପୂରି । ୩ ।
'ହ' ଟି ଭେଦ ଜାଣନ୍ତି ଗୋମତ ଟଗାବେଖ ।
ଋବବେଦ ବ୍ରହ୍ମା ଯେ ରଚିଲେ ଗ୍ରହପାଖ । ୪ ।
ମଣ୍ଡଳ ଶିଖରେ ଏତ ବଜେ କଟିଲ ଯହୁଁ ।
ଋବବେଦ ମନ୍ତ୍ରନରୁ ରେ ଶବଦ ତହୁଁ । ୫ ।

ଏ ବେନି ଅକ୍ଷର ଯେବେ ଏକତ୍ର ହୋଇବ ।
ହରି ବୋଲି କରି ନାମ ହୃଦରେ ଗୁଣିବ । ୬ ।
ହରି ଭେଦେ ହେଉଛନ୍ତି ନ ଜାଣନ୍ତି ହେତୁ ।
କହନ୍ତି ଅନନ୍ତ ଶିଶୁ ହରିନାମକୁ ଧ୍ୟାୟି । ୭ ।

---

## ୫୪—ବୀଜ ଶବ୍ଦ ଭଜନ

ଶୂନ୍ୟରେ ବିହାର ପଦ୍ମ ରଚିଲେ ଶ୍ରୀହରି ।
ଦଶିଲକ ସର୍ବଶୂନ୍ୟ ବିହାର ମଣ୍ଡଳୀ । ୧ ।
ଶୂନ୍ୟକୁ ଶୂନ୍ୟ ମିଶାଇ କଲେକ ମନ୍ଥନ ।
ତେଣୁକରି 'ବି' ଅକ୍ଷର ହେଲା ଉତପନ୍ନ । ୨ ।
ଅକାର ଉକାର ଯେ ମକାର ଥିଲା ବନ୍ଧ ।
ତିନିଙ୍କି ଛନ୍ଦିଲେ ମଣିକୁଞ୍ଜୀ ଦ୍ୱାରଠାଇଁ । ୩ ।
ତିନି ଛନ୍ଦ ଫିଟନ୍ତେ ମକାର ହେଲା ଜାତ ।
ଏମନ୍ତ ପ୍ରକାରେ ରାମ ନାମଟି ସମ୍ଭୂତ । ୪ ।
ଏ ବେନି ଅକ୍ଷର ଯେବେ ହୋଇବ ଏକତ୍ର ।
ଦ୍ୱ ଜାନକୀ କହେ ସନ୍ଥ ପାଦେ ରହୁ ଚିତ୍ତ । ୫ ।

---

## ୫୫—ନାମ ମହିମା ନିରୂପଣ

ଅନାମରୁ ନାମ ଜନମ ହୋଇ ।
ଅଣ ଅକ୍ଷରକୁ ଅନାମ କହି । ୧ ।
ନାମଟି ଅଟଇ ଏକା ଅକ୍ଷର ।
ଗୀତା ଭାଗବତେ ଏ କଥା ସାର । ୨ ।
ତହିଁ ଜନମିଛି ଓଁକାର ଗାର ।
ତହିଁ ତଳେ ଅର୍ଦ୍ଧମାତ୍ରାଟି ସାର । ୩ ।

ଅକାର ମକାର ଉକାର ତିନି ।
ଗୁରୁ ଅକ୍ଷରକୁ ସଙ୍ଗରେ ଘେନି । ୪ ।
ଚଉଷଠି ବୀଜ ଅଠ ଅକ୍ଷର ।
ବେନି ଷୋଡ଼ଶ ଦ୍ୱାଦଶ ବଗ୍ରୁର । ୫ ।
ଷଡ଼ ଗୁରୁଅକ୍ଷର ବିନ୍ଦୁ ସୁଜନ ।
ଗୁରୁ ସେବା କର ଗୁରୁଂ ଏମାନ । ୬ ।
ପୂର୍ବ ଜନମରୁ ଥିଲେ ବାସନା ।
ତେବେ ସଦଗୁରୁ ମିଳଇ ସିନା । ୭ ।
ନାମର ମହିମା ସୁଜନେ ଘୋଷ ।
ନାମରେ ଶରଣ ଅଚ୍ୟୁତ ଦାସ । ୮ ।

---

## ୫୭—ଠୁଲ ଶୂନ୍ୟ ଭଜନ

ଠୁଲ ଶୂନ୍ୟ ନାହିଁ ଯାର ଅନାମରେ ଜ୍ୟୋତି ।
ପାଦ ପାଣି ନାହିଁ ଯାର ଅନାମରେ ସ୍ଥିତି । ୧ ।
ଦେହ ନାହିଁ ଅଦେହରେ କରଅଛି ବାସ ।
ଅଜପା ଅକର୍ମା ଅଣ ଅଭ୍ୟାସ ଅଦୃଶ୍ୟ । ୨ ।
ଚ୍ୟୁତ ନୁହେଁ ଅଚ୍ୟୁତ ସେ ଅଣାକାର ମତେ ।
ଜୀବ ନୁହେଁ ଅଜୀବ ସେ ପରମରେ ରହେ । ୩ ।
ବ୍ରହ୍ମାଣ୍ଡ ଉପରେ ବ୍ରହ୍ମ ବୋଲନ୍ତି ଯାହାକୁ ।
ବନ୍ଧ୍ୟା ହୋଇ ଜାତ କଲ ପରମ ପୁଅକୁ । ୪ ।
ଖଣ୍ଡ ନୁହେଁ ଅଖଣ୍ଡଳ ସ୍ଥାନେ ଦିଅ ମନ ।
ବୁଦ୍ଧି ସହି ନାହିଁ ନାହିଁ ଶଢା ଚଇତନ । ୫ ।
ନୟନରେ ନାହିଁ ସେ ଯେ ନୁହଇ ଉଦ୍ଭଟ ।
ଅଷ୍ଟାଙ୍ଗ ଯୋଗରେ ଯୋଗୀ ନ ପାଇଲେ ଭେଟ । ୬ ।

ପୂର୍ଣ୍ଣାନନ୍ଦ ଉପରେ ସେ ପରମରେ ନାହିଁ ।
ପଞ୍ଚରତ୍ନ ସାଣା ଯେ ତୁ ଅନ୍ତ ସେଇଠାଇଁ । ୭ ।
ପବନ ନ ଗମେ ଚନ୍ଦ୍ର ସୂର୍ଯ୍ୟ ନ ଗମଇ ।
ଗୁରୁ ଶିଷ୍ୟ ମନ୍ତ୍ର ଯନ୍ତ୍ର ସେଠାବକୁ ନାହିଁ । ୮ ।
ପୂଜା ବ୍ରତ ତୀର୍ଥ ଯଜ୍ଞ ତ୍ରିଗୁଣ ବାହାର ।
ବ୍ରହ୍ମା ବିଷ୍ଣୁ ମହେଶଙ୍କ ନ ହେଲା ଗୋଚର । ୯ ।
କଥନ ନୁହଇ ଅକଥନ ଅପ୍ରମିତ ।
ଯଶୋବନ୍ତେ ବୁଝାଇଲେ ପ୍ରଭୁ ଜଗନ୍ନାଥ । ୧୦ ।

---

## ୪୭—ସନ୍ଧି ରହସ୍ୟ ତତ୍ତ୍ୱ

'ସି' ମଧ୍ୟରେ ବିଜସ୍ୱେ ମହା ମାୟା ଜ୍ୟୋତି ।
'ନ୍ଧି' ଅକ୍ଷରେ ବିଜୟ ସେ ବ୍ରହ୍ମ ଯଦୁପତି । ୧ ।
'ର' ଅକ୍ଷରରେ ଅପେ ରମିଲେ ଶଙ୍କର ।
'ହ' ମଧ୍ୟରେ ରହିଲେ ବ୍ରହ୍ମ ଏକାକ୍ଷର । ୨ ।
ଅକ୍ଷର ବୋଲିବା ଅଣ ଅକ୍ଷର ପ୍ରକାଶ ।
ପଞ୍ଚାଶ ଅକ୍ଷରେ ତହିଁ କରିଅଛି ବାସ । ୩ ।
ଅକ୍ଷରେକ ଅଛି ତାର ଏକଇ ଚରଣ ।
ଏକ ଅଙ୍ଗ ଏକ ଭୁଜ ଏକଇ ଶ୍ରବଣ । ୪ ।
ଦେଖା ବିନା ଦେଖିବ ଅଶେଷ ତାର ଲୀଳା ।
ଶ୍ୱେତ ପୀତ ଲୋହିତ କୁଙ୍କୁମ ନୁହେଁ କଳା । ୫ ।
ସଞ୍ଚଇ କୁଣ୍ଡଳୀ ସେହୁ ନ କରଇ ଗ୍ରାସ ।
କୁଣ୍ଡଳୀ ଗଣ୍ଠି ଛନ୍ଦରେ କରିଅଛି ବାସ । ୬ ।
ଘୋଟିଅଛି ଏକ ଲତା ଅଶେଷ ଶାଖାରେ ।
ଥାଇ ନ ମିଶିଣ ହେତୁ ବୁଝିଲା ମଧରେ । ୭ ।
ଏକ ହୋଇ ରହିଥାଇ ଭକତଙ୍କ ଅଙ୍ଗ ।
ଯଶୋବନ୍ତ ଦାସ କହେ ଭକତଙ୍କ ସାକ୍ଷୀ । ୮ ।

---

## ୫୮—କୃଷ୍ଣ ନାମ ଭଜନ

ଶୂନ୍ୟରୁ ଅକ୍ଷର ରୂପ ହୋଇଲା ସମ୍ଭୂତ ।
ଅଙ୍କୁର ଅଣ୍ଡଜ ନେଇ ତାର ଗର୍ଭଗତ । ୧ ।
ସକଳ ଫଳର ନେଇ ପାଦେ କଲା ସ୍ଥିତ ।
ଓଁମତ ପ୍ରକାଶ ଯେ ହୋଇଲା ଅବାଙ୍ମତ । ୨ ।
ଏମନ୍ତ ପ୍ରକାରେ 'ଷ୍ଣ' ଅକ୍ଷର ବିସ୍ତର ।
ଷ୍ଣ ଗର୍ଭରୁ 'କୃ' ଅକ୍ଷର ହୋଇଲା ବାହାର । ୩ ।
ଷ୍ଣ ଗର୍ଭେ 'କୃ' ଅକ୍ଷର କୃଷ୍ଣନାମ ଜପ ।
ଏକାକ୍ଷର ରୂପେ ନାମ ହୋଇଅଛି ଗୋପ୍ୟ । ୪ ।
ଦ୍ୱିଜ ଯେ ଅନନ୍ତ କୃଷ୍ଣ ନାମକୁ ଭଜଣି ।
କାର୍ପଣ୍ୟ ହୋଇ ବୋଲଇ କର ପରମାଣି । ୫ ।

---

## ୫୯—ବାନ୍ଧୁ ବଖାଣ

ଅହେ ଦାସେ ବାନ୍ଧୁ କାହୁଁ ପାଇଲ ?
କେମନ୍ତ ପ୍ରକାରେ ବାନ୍ଧୁ ଧଇଲ ? । ୧ ।
ବାନ୍ଧୁର ମହିମା ଅଟେ କେମନ୍ତ ?
କହେ ଜଗନ୍ନାଥ ଶୁଣି ଅନନ୍ତ । ୨ ।
ଅନନ୍ତ କହନ୍ତି ଶୁଣ ହେ ଦାସେ ।
ବାନ୍ଧୁ ବହୁଥିଲା ମହା ଆକାଶେ । ୩ ।
ପ୍ରାଣ ପାନ ସମାନୋଦାନ ବ୍ୟାନ ।
ପଞ୍ଚଭୂତ ଯେ ନ ଥିଲେ ପୁଣି । ୪ ।
ସେ ଧନେ ବାନ୍ଧୁ ମହାଶୂନ୍ୟେ ଥିଲା ।
କଳନା ସଂଯୋଗେ ଜନମ ହେଲା । ୫ ।
ପିତା ବାନ୍ଧୁ ମାତା ରଜ ପଙ୍କଜ ।
ଦେହଜଳ ଭିତରେ ଦେବତା ଭଜ । ୬ ।

ଛାୟା ମାୟା ବେନି ପାଶେ ସ୍ଥାପିଲି ।
ଅନାଦି ପୀଠ ଅର୍ଦ୍ଧମାତ୍ରା କଲି । ୭ ।
ଦେଉଳ ଭିତରେ ଧୀଅଁ ସ୍ଥାପନ ।
ଛହନ୍ତି ଅନନ୍ତ ବିନ୍ଦୁ ବସାଣି । ୮ ।

---

( ୬୦ )

ହରି ଭଜୁଥା

ହରି ନାମ ଗଣ୍ଠିଧନ କରିଥା ରେ ।
ଶ୍ରୀ କୃଷ୍ଣ ନାମ ଗଣ୍ଠିଧନ କରିଥା ରେ । ପଦ ।

କେ ତୋର ଜନନୀ  କେ ତୋର ବାନ୍ଧବ
ଖାଇବା ଖେଳିବା ସୁଖ ଶରଧା ।
ଗଲେ ଅନ୍ତ କାହୁଁ  ଏ ଦେହ ପାଇବୁ
ଘନଶ୍ୟାମ ରୂପ ଚିତ୍ତେ ଧ୍ୟାଇ ଥାରେ । ୧ ।
ଅର୍ଦ୍ଧ ଉର୍ଦ୍ଧ୍ୱପରେ  ଧନ ରଖିଅଛୁ
ଚୋର ଘେନିଯିବ ଚିତ୍ତେ ଜଗିଥା ।
ଛଟକେ ମାରିବ  କେହି ନ ଦେଖିବ
ଜ୍ୟୋତିପଥ ଭାବ ମନେ ହେଜୁଥା ରେ । ୨ ।
ଝୁରୁଅଛୁ ବିନ୍ଦୁ  ଝରେ ସୁଧା ବିନ୍ଦୁ
ନିଅଁ ପ୍ରାପ୍ତେ ନୀଳମଣି ଶୋଭିତା ।
ଟେକି ଅନାଇଲେ  ଠଳି ତୁ ପଡ଼ିବୁ
ଡୁଲ ଶୂନ୍ୟ ରୂପ ବ୍ରହ୍ମ କରିତା ରେ । ୩ ।
ଢୋଲାକୁ ଢାଳ  କମଳ ବେଢ଼ିଛନ୍ତି
ଧାଳେ ବେଢ଼ି ଛନ୍ତି ନିତ୍ୟ ଦେବତା ।
ଅନନ୍ତ ଅଚ୍ୟୁତ  ଅଣାକାର ଛନ୍ତି
ତୋଟେଢ ତୁ ଶଙ୍କେଲ ରୁହ ଦେବତା ରେ । ୪ ।

ଥେଣ୍ଟାପଣ କର ବୋଲ ତୁ ନ କଲୁ
ଦେବା ଦେଇବା ନୋହିଲ ଦାତା ।
ଧରଣୀରେ ଅଉ କେତେ ଦିନ ଥିବୁ
ନର୍କେ ପକାଇବେ ଜନ୍ମୁକରତା ରେ । ୫ ।
ପରମାନନ୍ଦଙ୍କୁ ଶ୍ରୀଚରଣ ଛଳେ
ଫୁଲଣା ନୋହିଲୁ ଧନେ ଫରଗ୍ତୁ ।
ବାୟୁରୁ ଭଙ୍ଗାଣି କୈକେବୁ ତୁ ପୁଣି
ଭକ୍ତବନ୍ଧୁ ପାଦେ ତେଉ ରଖିଥା ରେ । ୬ ।
ମନେ ମନେ ପଦ୍ମ- ପାଦେ ଲୟ କଲେ
ଜୀବ ପରମରେ ହୋଇବୁ ଦାତା ।
ରସିକ ନାଗର ସଙ୍ଗେ ସଙ୍ଗ ହେଲେ
ଲଭ ହେବ ତୋର ମୁକତି କଥା ରେ । ୭ ।
ବାର କଳା ରବ ହୃଦେ ହେବାଯାଏ
ଶ୍ରୀକୃଷ୍ଣ ଚରଣ ଚିତ୍ତେ ଧ୍ୟାଇଥା ।
ସେ ନାଟେ ବସିବୁ ଆନନ୍ଦେ ହସିବୁ
ସବୁଦିନେ ଥିବ ତୋ ଯଶ କଥାରେ । ୮ ।
ହରି ନାମ ଧରି କରୁ ହେବୁ ପାର
ହରି ହରି ବୋଲି ହୃଦେ ଭରୁଥା
କହେ ବଳରାମ ସେ ପାଦେ ଶରଣ
ଗୁରୁ ଶିଷ୍ୟ ଚୋକା ପାଇଛୁ ବ୍ୟଥା ରେ । ୯ ।



ମୁଦ୍ରାକର—ଶ୍ରୀ ଅରକ୍ଷିତ ଦାସ, ଦାଶରଥି ପ୍ରେସ, କଟକ—୨
୧୯୬୨